# ସମର୍ପଣ ସୁମନ ଶତକ



ଲେଖକ

ପ୍ରାଧ୍ୟାପକ ସୁଶାନ୍ତ କୁମାର ପଣ୍ଡା

# ସମର୍ପଣ ସୁମନ ଶତକ

ଲେଖକ- ପ୍ରାଧ୍ୟାପକ ସୁଶାନ୍ତ କୁମାର ପଣ୍ଡା
ବାରବାଟୀ, ଧର୍ମଶାଳା, ଯାଜପୁର
ପ୍ରକାଶନ ସହଯୋଗୀ- ସୁଚେତା ପ୍ରଧାନ
ହରିଡ଼ାପାଳ, କଲଣ, ଯାଜପୁର
ପ୍ରକାଶକ : କୃଷ୍ଣା
ଜାରକା, ଧର୍ମଶାଳା, ଯାଜପୁର
ଫୋନ୍: ୯୨୩୮୫୧୯୮୧୫
ପ୍ରଥମ ସଂସ୍କରଣ : ୨୦୧୯-ଡିସେମ୍ବର-୧୦, ଗୀତାଜୟନ୍ତୀ
ମୂଲ୍ୟ : ଟ୧୦୦/

# SAMARPANA SUMAN SATAKA

BY

*Sushanta Kumar Panda ,Reader*
*Barabati, Dharmasala, Jajpur*
*Co. Published-*
*Sucheta Pradhan*
*Haridapal,Kalan, Jajpur*
*PH. 9439867821*

**Published by:** KRUSNA
Jaraka, Dharamasala, Jajpur
Ph: 9238519815
**First Edition : -2019-Dec.10-Geeta Jayanti**
Price **Rs. 100/**

**ISBN. 9789387016255**



ଉତ୍ସର୍ଗ.....

ମୋର ସ୍ୱର୍ଗତ ଅଜା ପଣ୍ଡିତ ନାରାୟଣ ରଥ ଏବଂ ଆଈ ସ୍ୱର୍ଗତା ଦୁର୍ଗାଦେବୀଙ୍କ ପଦକମଳରେ ସମର୍ପିତ........







# ଅଭିମତ



ଅବସରପ୍ରାପ୍ତ ପ୍ରାଧାପକ ସୁଶାନ୍ତ କୁମାର ପଣ୍ଡା ସ୍ଥାନୀୟ ମଧୁପୁର କଲେଜରେ ଅଧାପନା କରି ସଂପ୍ରତି ଅବସର ଗ୍ରହଣ କରିଛନ୍ତି । ବିଗତ ଚାରିଦଶନ୍ଧି ଧରି ସେ ସାହିତ୍ୟ ସାଧନାରେ ବ୍ରତୀ ଅଛନ୍ତି । ସାହିତ୍ୟ ସହିତ ଆଧାତ୍ମିକତା, ଯୋଗ ପ୍ରଭୃତି କ୍ଷେତ୍ରରେ ତାଙ୍କ ପ୍ରବେଶ ରହିଥିବା ମୁଁ ଅନୁଭବ କରିଛି । ଆମ ଅଂଚଳର ଆକର୍ଷଣ ଏବଂ ଆରାଧ ମଧୁତୀର୍ଥ ଶାୟୀ ଶ୍ରୀନାରାୟଣଙ୍କ ସଂପର୍କରେ 'ମଧୁମଣ୍ଡନ ଶ୍ରୀନାରାୟଣ ଲୀଳା ମାଧୁରୀ' ଓ 'ମଧୁଶାୟୀ ଶ୍ରୀନାରାୟଣ ଭକ୍ତି ସୁମନ' ପୁସ୍ତକ ପ୍ରକାଶିତ ହୋଇ ଆଦୃତ ହୋଇଛି । ଶ୍ରୀଚନ୍ଦନେଶ୍ୱର ମହାଦେବ ଏ ଅଂଚଳର ଏକ ପ୍ରସିଦ୍ଧ ଶୈବପୀଠ, ଶ୍ରୀ ଦେବପୀଠ ଆଧାରରେ 'ଚନ୍ଦେନେଶ୍ୱର ଭକ୍ତି କୁସୁମାଂଜଳି' ରଚନା କରିଛନ୍ତି । ବ୍ରାହ୍ମଣୀ ତଟ ଏବଂ ୧୬ନଂ ଜାତୀୟ ରାଜପଥ ପାର୍ଶ୍ୱରେ ଦୁର୍ଗାପୁରଠାରେ ପ୍ରଖ୍ୟାତ ଦୁର୍ଗାଦେବୀଙ୍କ ମନ୍ଦିର ରହିଛି । ଉକ୍ତ ପୀଠ ଆଧାରରେ 'ଦୁର୍ଗାଦେବୀ ଭକ୍ତି ସୁମନ' ପୁସ୍ତକ ରଚନା କରିଛନ୍ତି । ଏଥି ସହିତ 'ଭକ୍ତି ସୁମନ ଶତକ', 'ଆମ ପ୍ରିୟ ଫୁଲ ଫଳ' ତାଙ୍କ ଦ୍ୱାରା ରଚିତ । ଏହା ବ୍ୟତୀତ କେତେକ ଉପାଦେୟ ଗ୍ରନ୍ଥ ସଂପାଦନା କରିଅଛନ୍ତି ।



ସଂପ୍ରତି 'ସମର୍ପଣ ସୁମନ ଶତକ' ଭକ୍ତି ଭାବାତ୍ମକ ପୁସ୍ତକ ପ୍ରକାଶିତ ହେବାକୁ ଯାଉଛି । ପୂର୍ବ ପୁସ୍ତକଗୁଡ଼ିକ ପରି ଏହା ସୁଧୀ ପାଠକମାନଙ୍କଦ୍ୱାରା ଆଦୃତ ହେବ, ଆଶା କରିବା ସ୍ୱଭାବିକ ।

ତାଙ୍କ ଉଦ୍ୟମରେ ମାସିକ ଗୀତା ପାରାୟଣ ଓ ଚର୍ଚ୍ଚା ମଣ୍ଡଳୀରେ ଯୋଗଦେଇ ଅଶେଷ ତୃପ୍ତିଲାଭ କରିଛି । ବିଭିନ୍ନ ସାରସ୍ୱତ ଓ ସାଂସ୍କୃତିକ ଅନୁଷ୍ଠାନରେ ଯୋଗଦାନ ଦ୍ୱାରା ତାଙ୍କ ସାଂସ୍କୃତିକ ମାନସକୁ ଲକ୍ଷ୍ୟ କରିହୁଏ । ସାଧନାର ଧାରାକୁ ଅବ୍ୟାହତ ରଖି ସାରସ୍ୱତ ବାଣୀଭଣ୍ଡାରକୁ ଅଧିକରୁ ଅଧିକ ସାରସ୍ୱତ ସୁମନ ଦାନ କରୁଥାନ୍ତୁ, ଏତିକି କାମନା କରି ରହୁଛି ।

ଇତି

ସୁଚେତା ପ୍ରଧାନ
ହରିଡ଼ାପାଳ, କଲଣ, ଯାଜପୁର



# ଅଭିମତ

ଅଧ୍ୟାପକ ଶ୍ରଦ୍ଧେୟ ସୁଶାନ୍ତଙ୍କ 'ସମର୍ପଣ ସୁମନ ଶତକ' ପାଣ୍ଡୁଲିପି ପାଠ କରିବାର ସୁଯୋଗ ପାଇଥିବାରୁ ମୁଁ କିପରି ଭାବେ ମୋର ମନୋଭାବ ପ୍ରକାଶ କରିବି, ସେଥିପାଇଁ ଯେତେ ଯାହା କହିଲେ ମଧ୍ୟ ତାହା ଅସଂପୂର୍ଣ୍ଣ ହେବ । ଆମରି ହାତଗଢ଼ା ଗୋଟିଏ ଛାତ୍ର ଏହି ମଧୁପୁର ହାଇସ୍କୁଲରୁ ଅଧ୍ୟୟନ ସାରି ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ଡିଗ୍ରୀଲାଭ କରି ସାରିବା ପରେ ପୁଣି ସେହି ମଧୁପୁର କଲେଜରେ ଅଧ୍ୟାପନା କରିବା ନିଜପାଇଁ ଯେତିକି ନୁହେଁ, ଆମ୍ଭମାନଙ୍କ ପାଇଁ ଅଧିକ ଗୌରବଜନକ । ଏକ ସଂଯତ ଓ ସ୍ୱଳ୍ପଭାଷୀ ବ୍ୟକ୍ତିରୂପେ ସେ ସର୍ବତ୍ର ପରିଚିତ । ଫଳଭରା ବୃକ୍ଷ ଅବନତ ହେଲାପରି ସେ ଅତି ବିନୀତ ଓ ଭଦ୍ର । ତାଙ୍କ ସହିତ ଯେ କୌଣସି ବିଷୟ ଆଲୋଚନା କଲେ, ତାଙ୍କର ପ୍ରାଚୀନ ସାହିତ୍ୟରୁ ଆରମ୍ଭ କରି ପୁରାଣ, ଦର୍ଶନ, ଛନ୍ଦ ଓ ନିରୁକ୍ତ ଆଦିରେ ତାଙ୍କର ଗଭୀରତା କେତେ ତାହା ସ୍ପଷ୍ଟ ବାରିହୁଏ । ଅଧ୍ୟାତ୍ମ ବିଦ୍ୟାରେ ତାଙ୍କର ପାରଦର୍ଶିତା କେତେ ତାହା ତାଙ୍କ ଦ୍ୱାରା ରଚିତ 'ଜଳଶାୟୀ ଶ୍ରୀ ନାରାୟଣ' ଭକ୍ତି ସୁମନ ପୁସ୍ତକରୁ ଉପଲବ୍ଧି କରିହୁଏ । ସେହି ଚିଦାନନ୍ଦମୟଙ୍କ ଦିବ୍ୟଲୀଳାକୁ ବିଭିନ୍ନ ଛନ୍ଦ ଓ ରାଗ ରାଗିଣୀରେ ରଚନା କରି ସେ ନିଜର ଭକ୍ତି ସୁମନ ଅର୍ପଣ କରିଛନ୍ତି । ସେ ଯଦି ସରୋବର ଉପରିସ୍ଥ ନାରୀକେଳ ବୃକ୍ଷ ହୁଅନ୍ତେ, ଅଥବା ପୂର୍ବପ୍ରାନ୍ତ ପାବଚ୍ଛରେ ଶିଳାରୂପେ ମହାପ୍ରଭୁଙ୍କ ସେବାରେ ନିଜକୁ ଉତ୍ସର୍ଗ କରିପାରନ୍ତେ, କେତେ କେତେ ଭକ୍ତଙ୍କ ପଦପାତରେ ତାଙ୍କର ଜୀବନ ସାର୍ଥକ ହୋଇପାରନ୍ତା । ଶଂସିତ କବିତା ଗୁଚ୍ଛ, ଯାହାକି ପ୍ରକାଶ ଅଭିମୁଖୀ, ସେଥିରେ ମଧ୍ୟ ସେ ଜଳଶାୟୀ ନାରାୟଣଙ୍କ ଅନନ୍ତ ମହିମା ପ୍ରଖ୍ୟାପନରେ ଅବହେଳା କରିନାହାନ୍ତି । ଯେତେବେଳେ ବସନ୍ତର ନବୀନ ସ୍ପର୍ଶରେ ବସୁନ୍ଧରା ଉଦ୍‌ଭିନ୍ନ ଯୌବନା ହୋଇଉଠିଛି ଜଳ ସ୍ଥଳ ସର୍ବତ୍ର ଆନନ୍ଦର ଲହରୀ ଖେଳିଯାଉଛି, ତା'ରି ମଧ୍ୟରେ ହୋଇଛି 'ରାମପୂଜନ' ଏବଂ କାତ୍ୟାୟନୀ ବାସନ୍ତୀଦେବୀଙ୍କ ଆବିର୍ଭାବ । ଏସବୁ ପୂଜୋତ୍ସବ ସରୁ ନସରୁଣୁ ଭକ୍ତଗଣ ଉଦ୍‌ବେଗର ସହିତ ଚାହିଁଥା'ନ୍ତି:-

"ବରଷକେ ଆଜି ମାହେନ୍ଦ୍ର ଲଗନେ ସେବିବେ ପ୍ରଭୁ ପୟର
ବିଷୁବ ଲଗନେ ଦରଶନ ଦେବେ ନାରାୟଣ ଗଂଗାଧର ।"

ତାଙ୍କର ଅପୂର୍ବ ସୁଷମା ଓ ଦିବ୍ୟଶୋଭା ଭାଷାରେ ପ୍ରକାଶ କରିବାର ଭାବ ଆମର ନାହିଁ । ସାଂସାରିକ ଜଂଜାଳ ବେଳୁବେଳ ଆମ ଜ୍ଞାନରାଶିକୁ ଆଚ୍ଛାଦିତ କରିଦେଉଛି । ତେଣୁ ବଚନରେ ସଂଯମ ନାହିଁ, ମନରେ ସଂଯମ ନାହିଁ ଏବଂ ଦୃଷ୍ଟାରେ ମଧ୍ୟ ସଂଯମ



ନାହିଁ । ଗର୍ବୋନ୍ନତ ମନୁଷ୍ୟ ମଦିରାର ମୋହରେ ଆଜି ପଥହରା । ତା' ନିକଟରେ ପିତା, ମାତା ଏପରିକି ନିଜ ସ୍ତ୍ରୀ ମଧ୍ୟ ଅବହେଳିତ । କ୍ରୋଧୀ ଅକ୍ରୋଧ ଯେ କେତେ ମହାନ ତା' ବୁଝିବାକୁ ତା' ନିକଟରେ ଅବସର ନାହିଁ । ମନ ସୁବବେଳେ ବ୍ୟାକୁଳ ଓ ଉଦ୍‌ବିଗ୍ନ । ଏକ ଅନିଶ୍ଚିତ ମରୀଚିକା ପଛରେ ସେ ପ୍ରଧାବିତ । ଆନ୍ତରିକ ଭକ୍ତି ଭାବନାଠାରୁ ସେ ଖୁବ୍ ଦୂରରେ । ଯାହା ଚାଲିଛି ତାହା କେବଳ ଧର୍ମକୁ ଆଖିଠାର ମାତ୍ର । ଆମ ଭିତରେ ଯେ ସର୍ବଦ୍ରଷ୍ଟା ଅଛନ୍ତି ସେ ବୁଝିବ କିପରି ! କାମନାର ଅନଳ ଏପରି ହୁ ହୁ ବଢ଼ି ଚାଲିଛି ଯେ, ଗୋଟିଏ ଅଭାବର ପୂର୍ତ୍ତି ପରେପରେ ଅନ୍ୟଏକ ପହଂଚି ଯାଉଛି । ମନର ଉଦ୍‌ବେଗ ଓ ଉଦ୍‌ବେଳନକୁ ରୋକିବାକୁ ସେ ବିପଦ ବାନ୍ଧବ ହରିଙ୍କୁ ମନେ ପକାଉ ନାହିଁ । କ୍ରୋଧ ଏବଂ ଅହଂକାର ଏ ସବୁର ପ୍ରତିବଂଧକ ସାଜିଛି । ତେଣୁ ସେ ସାଧୁ ବା ସତ୍‌ସଂଗଠାରୁ ଦୂରେଇ ରହୁଛି । ଧନ ଦାରା ସୁତ ମୋହରେ ଆବଦ୍ଧ ହୋଇ ଭାବୁଛି ସେ ଏଠାରେ ଚିରକାଳ ରହିଯିବ । ସେ ଭୁଲିଯାଉଛି-- "ଜନ୍ମ ହୋଇଲେ ନିଶ୍ଚେ ମରି । ସଂସାର ନୁହଁଇ କାହାରି ॥"

ଆମ ବାସଗୃହ ଆମପାଇଁ ଧର୍ମଶାଳା । ଏଠାରେ କିଛିଦିନ ଅବସ୍ଥାନ କରିବାପରେ ଆମେ ଆସିଥିବା ସ୍ଥାନକୁ ଫେରିଯିବାକୁ ପଡ଼ିବ । ଏସବୁ ପ୍ରତି ଦୃଷ୍ଟି ନଦେଇ ମନୁଷ୍ୟ ମାୟା ମୋହ ଓ ସୁଖ ପ୍ରାପ୍ତିପାଇଁ ଅହରହ ଚେଷ୍ଟିତ । ସେ ଜାଣିବା ଉଚିତ ସୁଖ ଚିରସ୍ଥାୟୀ ନୁହେଁ । ବରଂ ଦୁଃଖ ହିଁ ଚିରସ୍ଥାୟୀ । କବିଙ୍କ ଭାଷାରେ- "ବସ୍ତୁ ନୁହଁଇ ସେ ଅଟଇଟି ଧୂମ/ ଅନ୍ୟ ନାମ ତା'ର ଆକାଶ କୁସୁମ ।" "ସନ୍ନ୍ୟାସୀ, ଗୃହସ୍ଥ, ରଂକ ଅଥବା ରାଜନ/ ଦୁଃଖ ଶୋକୁ ପରିତ୍ରାଣେ ନୁହନ୍ତି ଭାଜନ ।" ଏଥିରୁ ରକ୍ଷା ପାଇବାକୁ ହେଲେ ପରମ ପୁରୁଷ ବିଷ୍ଣୁ ଯେ କି ଜଳ, ସ୍ଥଳ, ଆକାଶ ସ୍ଥାବର ଜଂଗମ ସର୍ବତ୍ର ବିରାଜିତ ତାଙ୍କୁ ହିଁ ସ୍ମରଣ କରିବାକୁ ହେବ । ତେଣୁ ଏବେ ହୁଁ - "କୃଷ୍ଣ ପାଦପଦ୍ମେ ଦିଅନ୍ତୁ ମନ/ ସରିଲେ ନପାଇବୁ ଆଉ ଜୀବନ ।"

ଶରୀର କ୍ରମଶଃ ଦୁର୍ବଳ ହୋଇଯାଉଛି । ଅଂଗ ପ୍ରତ୍ୟଙ୍ଗ ଥରଥର ହେଲାଣି । ଉଠିବାକୁ ଯୁ ନାହିଁ । ଯଷ୍ଟି ଖଣ୍ଡି ସମ୍ବଳ, ତଥାପି ମନରୁ ପର ଅପର ଭେଦ ତୁଟୁ ନାହିଁ । ଯାହାକୁ ନିଜର ବୋଲି ଭାବୁଛ ସେ ନିଜର ନୁହେଁ ।

"ଭାଇ ବୋଲ ବଂଧୁ ବୋଲ ସଂପଦର ସାଥୀ/ ଜୀବ ଯିବାବେଳେ ଏକା ଗୋବିନ୍ଦ ସାରଥୀ ।

ସେହି ସର୍ବଦ୍ରଷ୍ଟା ପରଂବ୍ରହ୍ମଙ୍କ କରୁଣା ଭିକ୍ଷା ବ୍ୟତୀତ ଆମର ଗତ୍ୟନ୍ତର ନାହିଁ ।

ଶ୍ରୀ ବ୍ରଜବଂଧୁ ସାହୁ
ଅବସରପ୍ରାପ୍ତ ଶିକ୍ଷକ, ଶୂଳିଆ



# ଅଭିମତ

ମଣିଷ ଭାବପ୍ରକାଶ ପାଇଁ କିବତାର ସାହାଯ୍ୟ ନେବା ସ୍ୱାଭାବିକ କ୍ରିୟା । ଶବ୍ଦ ପ୍ରକାଶ କରିବା ହିଁ କବିତା । ପ୍ରଥମରୁ ହିଁ ସମସ୍ତ ମାନବୋଚିତ ଭାବଗୁଡ଼ିକ କବିତାରେ(ଛନ୍ଦବନ୍ଧ) ପ୍ରକାଶିତ ହୋଇଛି । ମାତ୍ର ମଣିଷ ଜୀବନର ବିଭିନ୍ନ ସମୟରେ ହୃଦୟରେ ଯେଉଁ ଯେଉଁ ଭାବ(ରସ) ଅତ୍ୟଧିକ ଉଦ୍ରେକ ହୋଇଥାଏ ସେତେବେଳେ ତା'ର କବିତା ସେହି ରସାଶ୍ରୟୀ ହୋଇଯାଏ । କୈଶୋରରେ ଯେଉଁ ଭାବ ହୃଦୟକୁ ଦ୍ରବୀଭୂତ କରିଥାଏ ତା' ପ୍ରୌଢ଼ ସମୟରେ ସେତିକି ମାତ୍ରାରେ ମନକୁ ଆନ୍ଦୋଳିତ କରେ ନାହିଁ । ଅବଶ୍ୟ ଅତି ବାର୍ଦ୍ଧକ୍ୟରେ ମଧ୍ୟ ଶୃଙ୍ଗାର ଧର୍ମୀ କବିତା ଲେଖିବା ଲବ୍ଧ ପ୍ରତିଷ୍ଠ ହୋଇଥିବା (ବ୍ୟତିକ୍ରମ ହେଲେ ହେଁ) କବିଙ୍କର ଅଭାବ ନାହିଁ । ମାତ୍ର ଆମର ଆଲୋଚିତ କବି ସୁଶାନ୍ତଙ୍କର ଏପରି ବ୍ୟତିକ୍ରମ ହୋଇନାହିଁ । ସେ ବାନପ୍ରସ୍ଥୀୟ ଭାବଧାରାର ଅତିମାତ୍ରାରେ ନିଜକୁ ମଜ୍ଜାଇ ଦେଇଛନ୍ତି । ଏଣୁ ତାଙ୍କର ଏ କବିତା ପୁସ୍ତକର ଶହେଟି ଯାକ କବିତା ହିଁ ବାସ୍ତବଧର୍ମୀ ତଥା ଧର୍ମାଶ୍ରୟୀ ହୋଇଛି ।

ଭକ୍ତି, ଜ୍ଞାନ(ଯୋଗ) ଓ କର୍ମ ମଧ୍ୟରେ ଏ ପର୍ଯ୍ୟନ୍ତ କବି ସମନ୍ୱୟ ଆଣି ପାରିନାହାନ୍ତି । ଏଣୁ ସମୟେ ସମୟେ ହତାଶଭାବରେ ତାର ବୌଦ୍ଧିକ ଭାବଧାରାକୁ ସେ କବିତା ଭିତରକୁ ନ ନେଇ କବିତାଗୁଡ଼ିକ ଯେତେ ସରସ, ସୁନ୍ଦର ଓ ହୃଦୟସ୍ପର୍ଶୀ ହୋଇ ପାରିବ, ସେଥିପାଇଁ ସେ ଉଜାଗ ରହିଛନ୍ତି । ସଂସାରକୁ ଅଳୀକ ବୋଲି ସେ ପ୍ରକାଶ କରିଛନ୍ତି-

ଅସ୍ଥିର ଜୀବନ, ସମ୍ପଦ ତୁଚ୍ଛ, ମାୟା ଭିଆଣ  
ନୟନେ ଅଜ୍ଞାନ ପଟଳ ଥୋଇ ହରନ୍ତି ମନ ।  
ଅଳୀକ ମୋହର ବିନାଶେ ଦିବ୍ୟ ଭାବ ଉଦୟ  
ଚିଦାନନ୍ଦ ପାଦ ଦର୍ଶନେ ନାଶ ସକଳ ଭୟ । (ଦିବ୍ୟ ଦର୍ଶନ/ ୯)

ତପ ଓ ଧ୍ୟାନ ଉପରେ ମନୋନିବେଶରେ ଚିରନ୍ତନ ଆନନ୍ଦଲାଭ ପନ୍ଥା ଦର୍ଶାଇବାକୁ ଯାଇ କବି କହିଛନ୍ତି-

ଶରୀର ସମ୍ପଦ, ସନ୍ତାନ କଳତ୍ର ସବୁ ତ ତାଙ୍କରି ଦାନ  
କୃତାଞ୍ଜଳିପୁଟେ ପ୍ରଣତି ତା' ପଦେ ନିରନ୍ତର କର ଧ୍ୟାନ ।  
(କବିତା- ନିରନ୍ତର ଧ୍ୟାନ)



ମୁକ୍ତିକାମୀ କବି କେବଳ ମୁକ୍ତିକୁ ଶ୍ରେଷ୍ଠ କୈବଲ୍ୟ ଭାବରେ ଚିନ୍ତାକରି ପ୍ରକାଶ କରିଛନ୍ତି-

ସକଳ ରିପୁଙ୍କୁ ଜିଣିଲେ ତହୁଁ ହେବୁ ମୁକତି
ଗୁରୁ ସେବା ସତସଙ୍ଗରେ ହେବୁ ତୁହି ମୁକତି । (ମୁକ୍ତି ହିଁ ମୁକ୍ତି)

କେତେକ କବିତାରେ କବି ଗୁରୁଙ୍କ ସାନ୍ନିଧ୍ୟଲାଭ ନିମନ୍ତେ ବ୍ୟଗ୍ରତା ପ୍ରକାଶ କରିଛନ୍ତି । ତାଙ୍କର ସେହି କଳ୍ପିତ ଗୁରୁ 'ଜଗଦ୍‌ଗୁରୁ' ବା ନର ଦେହଧାରୀ 'ତତ୍ତ୍ୱଦର୍ଶୀ ଶ୍ରୋତ୍ରୀୟ ବ୍ୟକ୍ତି' ଏ ସମ୍ପର୍କରେ ସଂଶୟ ରଖିଛନ୍ତି । ଏ ଏକ କଠିନ ଦାର୍ଶନିକ ଚିନ୍ତାକୁ ସେ ଉନ୍ମୋଚନ କରିବାକୁ ବୋଧହୁଏ ଉଚିତ ମନେ କରି ନାହାନ୍ତି ।

କବିତାଗୁଡ଼ିକର ସାଂଗୀତିକତା ପରୀକ୍ଷିତ ନହେଲେ ଏହାର ପ୍ରକୃତ ଆନନ୍ଦ ଉପଲବ୍ଧ କରିବା କଷ୍ଟକର । ଶିବାଙ୍କ ବ୍ୟତୀତ ଶିବ ସ୍ଥବିର ହେଲାଭଳି ସାଂଗୀତିକତା କବିତାକୁ ଶକ୍ତିମୟ କରିଦିଏ । ଏଣୁ ଏ କ୍ଷେତ୍ରରେ କବି ଉଦ୍ୟମ କରି କିଛି ସଂଗୀତକାରଙ୍କ ସାହାଯ୍ୟ ନେବା ନିତାନ୍ତ ଦରକାର । ନତୁବା ଏହା କେବଳ ନିର୍ଜୀବ ଶବ୍ଦ ଗାମ୍ଭୀର୍ଯ୍ୟ ଭିତରେ ବୁଡ଼ିଯିବ ସିନା ପ୍ରକୃତ ମଧୁରତା ପାଠକମାନଙ୍କୁ ମିଳି ପାରିବ ନାହିଁ ।

କବି ସାହିତ୍ୟର ବିଭିନ୍ନ ବିଭାଗ ଉପରେ ପୂର୍ବରୁ ନିଜ କସରତ୍ ଦେଖାଇ ଆସିଛନ୍ତି । କର୍ତ୍ତବ୍ୟ ଦୃଷ୍ଟିରୁ ସମାଲୋଚନା, ପ୍ରବନ୍ଧ, ବ୍ୟାକରଣ ଓ ବିଭିନ୍ନ ବସ୍ତୁନିଷ୍ଠ ନିବନ୍ଧ ସେ ପ୍ରକାଶ କରିଛନ୍ତି, କରୁଛନ୍ତି ମଧ୍ୟ । ମାତ୍ର ଏହାରି ମଧ୍ୟରେ ନିଜକୁ କଠିନତା ଭିତରୁ ସରଳତା ଆଡ଼କୁ ଟାଣି ଆଣିବାକୁ ସେ ନବୀନ ପ୍ରୟାସ ଆରମ୍ଭ କରିଛନ୍ତି । ପୂର୍ବରୁ ବୋଧହୁଏ ଦୁଇଟି ଶତକୀୟ କବିତାଗୁଚ୍ଛ ତାଙ୍କର ପ୍ରକାଶିତ ହୋଇସାରିଛି । ଏହିଭଳି କେତେ ଶତକୀୟ କବିତାଗୁଚ୍ଛ ପ୍ରକାଶ ପାଇଁ ସେ ଉଦ୍ୟମରତ ତାହା ତାଙ୍କୁ ହିଁ ଜଣା । ଅଲେଖ ପୁରୁଷ ତାଙ୍କର ସେ ଉଦ୍ୟମକୁ ସାକାର କରନ୍ତୁ ଓ ସେ ନିରୋଗ ଶରୀରରେ ବିଶେଷତଃ ଚାକିରି ଛାଡ଼ିବା ପରେପରେ ବାଣୀ ଆରାଧନାରେ ଅଧିକ ସମୟ ଓ ଧ୍ୟାନ ଦିଅନ୍ତୁ ଏହା କାମନା କରୁଛି ॥

ଶ୍ରୀଯୁକ୍ତ ଆଦିକନ୍ଦ ସାହୁ,
ଅବସରପ୍ରାପ୍ତ ପ୍ରଧାନଶିକ୍ଷକ

# ଅଭିମତ

ଅଧ୍ୟାପକ ସୁଶାନ୍ତ କୁମାର ପଣ୍ଡା ଜଣେ ଅନନ୍ୟ ନୀରବ ସାହିତ୍ୟସାଧକ । ପ୍ରଚାର ପ୍ରସାର ସର୍ବସ୍ୱ ସାହିତ୍ୟିକତା ଠାରୁ ସେ ନିଜକୁ ଦୂରେଇ ରଖିଥିବା ଜଣେ କ୍ରାନ୍ତିକାରୀ ମୌଳିକ ବିଚାର ସର୍ବସ୍ୱ ସାହିତ୍ୟିକ । ବସ୍ତୁବାଦୀ ଭୋଗସର୍ବସ୍ୱ ଓ ଆତ୍ମକୈନ୍ଦ୍ରିକ ଏକ ଅସୁସ୍ଥ ସମାଜିକ ଚଳଣିରେ କବି ଅଣନିଃଶ୍ୱାସୀ ଅନୁଭବ କରି ଏକ ପ୍ରାଣପ୍ରଚୁର୍ଯ୍ୟଭରା ସତ୍-ଚିତ୍-ଆନନ୍ଦମୟ ଏକ ଦିବ୍ୟ ଆଲୋକଭରା ଏକ ରସସିକ୍ତ ଜୀବନ ପାଇଁ ବ୍ୟାକୁଳ । ଶ୍ରୀମଦ୍ ଭଗବତ୍ ଗୀତାରେ 'ଆଧ୍ୟାତ୍ମ ବିଦ୍ୟା ବିଦ୍ୟାନାଂ'କୁ ଶ୍ରେୟ ମାର୍ଗ ରୂପେ ଗ୍ରହଣ ପୂର୍ବକ କେତୋଟି ପ୍ରାର୍ଥନା, ଜଣାଣ, ସ୍ତୁତି ପ୍ରଭୃତିକୁ ଉକ୍ତ ପୁସ୍ତକରେ ସ୍ଥାନ ଦେଇଛନ୍ତି । ମାନବିକ ମୂଲ୍ୟବୋଧ, ସୁସ୍ଥ ବିଚାରଧାରା, ବିଶ୍ୱପରିବାର, ମଣିଷପଣିଆ, ସ୍ନେହ, ପ୍ରେମ, ସଦିଚ୍ଛା, ଦୟା, ଧର୍ମ, ଦାନ ପ୍ରଭୃତି ଅନେକ ମାନବିକ ଦିବ୍ୟ ଗୁଣାବଳୀକୁ ବ୍ୟାଖ୍ୟା ପୂର୍ବକ ସରଳ ବୋଧଗମ୍ୟ ଭାଷାରେ କବି ଏସବୁକୁ ନିଜସ୍ୱ ଶୈଳୀରେ ଉପସ୍ଥାପନ କରିଛନ୍ତି । କବିଙ୍କର ସାହିତ୍ୟ ବିଭବକୁ ଆମେ ଏକ ବିଳାସୀ ସାହିତ୍ୟ ଆସର ଭାବେ କଦାପି ଗ୍ରହଣ କରିପାରିବା ନାହିଁ । ସାହିତ୍ୟ ମାଧ୍ୟମରେ ଏକ ସୁସ୍ଥ, ନିରାମୟ, ସୁନ୍ଦର ଦିବ୍ୟ ଆନନ୍ଦମୟ ସମାଜ ଗଠନ କରିବା କବିଙ୍କର ଏକ ଧ୍ୟେୟ । କବି ବାସ୍ତବରେ ଜଣେ ଯୋଗୀ । ନେଙ୍ଗୁଟି ପିନ୍ଧା କିମ୍ବା ତିଳକ, ମାଳା ପିନ୍ଧା ଅର୍ଥରେ ମୁଁ କହୁନି । ନିଜର ବିଚାର, ଆଚରଣରେ ଓ ବାକ୍ୟରେ କବି ସନ୍ତୁଳନ ରକ୍ଷା କରିଛନ୍ତି । ନିଜର ଉପଦେଶ ବା ବିଚାରକୁ ଖାଲି ବାକ୍ୟ ସଂଯୋଜନା କରି ସିଏ ପରଷି ନାହାନ୍ତି, ମାତ୍ର ନିଜ ଜୀବନରେ ପ୍ରତିଟି ପଦକ୍ଷେପରେ ଯାଉଥିବା ମାର୍ଗର ଅନୁଭବ ଓ ଅଭିଜ୍ଞତାକୁ ନେଇ ଏହି 'ସମର୍ପଣ ସୁମନ ଶତକ' ପୁସ୍ତିକାଟି ପାଠକମାନଙ୍କଦ୍ୱାରା ବହୁଳ ଭାବେ ଆଦୃତ ହେବ । ଶେଷରେ କବିଙ୍କର ସାହିତ୍ୟ ଜୀବନର ଉତ୍ତରୋତ୍ତର ଉନ୍ନତି କାମନା କରି ରହୁଛି ।

ଜୟ ଜଗନ୍ନାଥ

ପ୍ରାଧ୍ୟାପକ ସ୍ୱରୂପାନନ୍ଦ ପଣ୍ଡା




ମନୁଷ୍ୟ ମନରେ ସଂସାର, ବ୍ୟକ୍ତ ବିଶ୍ୱ ଯେତିକି ପ୍ରଭାବ ବିସ୍ତାର କରେ ଅଦୃଶ୍ୟ ଈଶ୍ୱରୀୟ ଚେତନା ମଧ୍ୟ ତଦପେକ୍ଷା ଅଧିକ ପ୍ରଭାବଶାଳୀ । ତା'ର ଶକ୍ତି, ସାମର୍ଥ୍ୟ, ଅହଂକାର, ବୈଭବ ଯେଉଁଠି ପରାହତ ହୁଏ ସେଠାରେ ସେ ଐଶ୍ୱରୀୟ ଶକ୍ତିର କାମନା କରିଥାଏ । ଦୃଶ୍ୟ ଜଗତ ଅପେକ୍ଷା ଅଦୃଶ୍ୟ ଜଗତର ଉପରେ ଅଧିକ ନିର୍ଭରଶୀଳ ହେବାକୁ ଶ୍ରେୟ ମଣିଥାଏ । ସେହି ଧାରାରେ ମନୁଷ୍ୟ ପରମାର୍ଥିକ ଶକ୍ତିକୁ ନାନା ଭାବରେ ସୁଦୂର ଅତୀତରୁ ଆରାଧନା, ଉପାସନା କରି ଆସିଛନ୍ତି ।

ବୈଦିକ ସାହିତ୍ୟରୁ ଆରମ୍ଭ କରି ଲୌକିକ ସାହିତ୍ୟ ମଧ୍ୟରେ ଏହାର ପ୍ରବାହକୁ ସକଳ ପ୍ରମୁଖ ଧର୍ମ ଓ ଭାଷାରେ ଦେଖିବାକୁ ପାଇ ପାରିବା । ଓଡ଼ିଆ ଭାଷା ସାହିତ୍ୟରେ ଏହାର ସୁପ୍ରସସ୍ତ ଓ ସୁଗଭୀର ପ୍ଲାବନ ପରିଦୃଷ୍ଟ । ଏହି ଧାରା ବା ପ୍ରବାହର ଦୁଇଗୋଟି ଆଧାର ସ୍ୱଷ୍ଟ ଭାବେ ଲକ୍ଷ୍ୟ କରି ପାରିବା । ଗୋଟିଏ ହେଉଛି ସଗୁଣ ସାକାର ଏବଂ ଅନ୍ୟଟି ନିର୍ଗୁଣ ନିରାକାର । ସଗୁଣ ସାକାର ଆଧାରରେ ସମଧିକ ସୃଷ୍ଟି ପରିପୁଷ୍ଟ । ନିର୍ଗୁଣ ନିରାକାର ସମ୍ବନ୍ଧରେ ଅପେକ୍ଷାକୃତ ସୀମିତ ରଚନା ଦେଖିବାକୁ ମିଳିଥାଏ । ତେବେ ଓଡ଼ିଶାର ପଂଚସଖାମାନଙ୍କର ରଚନାବଳୀର ବହୁ ଅଂଶ ଏବଂ ଅଲେଖ ପନ୍ଥୀମାନଙ୍କ କୃତିରେ ଏହି ଧରଣର ରଚନା ଉପଲବ୍ଧ ।

'ସମର୍ପଣ ସୁମନ ଶତକ' ଅନେକାଂଶରେ ନିର୍ଗୁଣ ନିରାକାରଙ୍କ ପ୍ରସଂଗ ଆଧାରରେ ଭକ୍ତିଗୀତିକାଗୁଡ଼ିକ ରୂପ ପାଇଛି । ଏହାରେ ଅନ୍ୟ ଏକ ପ୍ରସଂଗ ହେଉଛି ସଦାଚାର; ଯାହା ଆଧାତ୍ମିକ ଯାତ୍ରାର ମୂଳ ଆଧାର । ବହୁ





ସ୍ଥଳରେ ସଦାଚାରୀ ହେବା ନିମନ୍ତେ କବିତାମାନଙ୍କରେ ସୂଚନା ରହିଛି । କଳୁଷିତ, କାମନା ଜର୍ଜରିତ ବିକାର ମନ ମଧ୍ୟରେ ଆସ୍ଥାନ ପାତି ବସିଛି । ସୁତରାଂ ଶୁଦ୍ଧ ମାନସ ହେବାପାଇଁ ପ୍ରଥମେ ନିଜ ଭିତରର ଶତ୍ରୁଙ୍କୁ ଚିହ୍ନିବାର ଉଦ୍ୟମ କରିବା । ପରେ ତାଙ୍କୁ ପରାହତ ବା ବିମଳ ଅନ୍ତରରେ ଈଶ୍ୱରୀୟ ଚିନ୍ତନ, ଭଜନ, ସାଧନ ମାର୍ଗରେ ଅଗ୍ରସର ହେବା । ଏହି ବିଚାରର ଝଲକ ଗୀତିକା ମଧ୍ୟମରେ ପ୍ରକାଶ କରିବାର ପ୍ରୟାସ କରିଛି ।

ପୂର୍ବ ରଚିତ 'ଭକ୍ତି ସୁମନ ଶତକ' ସମେତ ପାଞ୍ଚଖଣ୍ଡି ଭକ୍ତି ଅର୍ଘ୍ୟ ପୁସ୍ତକ ପରି ଉକ୍ତ ଗ୍ରନ୍ଥଟି ଚିହ୍ନରା ଗ୍ରାହକମାନଙ୍କୁ ପରିତୋଷ କରିବାର ଆଶା ରଖୁଛି । ପରମ କାରୁଣିକ ପରମାତ୍ମାଙ୍କ ଅପାର କରୁଣାରୁ ଏହାର ସୃଷ୍ଟି ଏବଂ ପ୍ରକାଶନର ମାହେନ୍ଦ୍ର ବେଳାରେ ସେହି ପ୍ରଭୁଙ୍କ କୃପା ଜଗତ ଭଗତଙ୍କ ଉପରେ ଝରିପଡୁ ଏତିକି କାମନା କରି ପ୍ରଭୁଙ୍କ ଚରଣରେ ଶରଣ ନେଉଛି । ଏହାର ରଚନା ଏବଂ ପ୍ରକାଶନ କାଳରେ ଯେଉଁ ସୁଧୀ, ଗୁଣୀମାନେ ମୋତେ ଅନୁପ୍ରେରିତ କରି ଏ କାର୍ଯ୍ୟକୁ ସରସ ସୁନ୍ଦର କରିବାରେ ସହାୟତା କରିଛନ୍ତି ସେମାନଙ୍କ ମଧ୍ୟରୁ ଶ୍ରୀଯୁକ୍ତ ବ୍ରଜବଂଧୁ ସାହୁ, ଶ୍ରୀଯୁକ୍ତ ଆଦିକନ୍ଦ ସାହୁ, ଶ୍ରୀଯୁକ୍ତ ରଜନୀକାନ୍ତ ପୃଷ୍ଟି, ଶ୍ରୀଯୁକ୍ତ ଦଣ୍ଡଧର ନାୟକ, ଶ୍ରୀଯୁକ୍ତ ବୃନ୍ଦାବନ ପାତ୍ରୀ, ଶ୍ରୀଯୁକ୍ତ ଗୁରୁଚରଣ ଜେନା, ଶ୍ରଦ୍ଧେୟ ଗିରିଜା ଶଙ୍କର ନାୟକ, ସ୍ନେହାସ୍ପଦ ବିଚିତ୍ରାନନ୍ଦ ରାଉତ, ଗାୟକ ବୃନ୍ଦାବନ ପଣ୍ଡା, ଅଧ୍ୟକ୍ଷ ପଦ୍ମନାଭ ମଲ୍ଲ, ମହେଶ୍ୱର ପଣ୍ଡା, ସୁମନ୍ତ କୁମାର ପଣ୍ଡା, ଅଧ୍ୟାପକ ସ୍ୱରୂପାନନ୍ଦ ପଣ୍ଡା, ପ୍ରହଲ୍ଲାଦ ପଣ୍ଡା, ବିଭୂତିଭୂଷଣ ପଣ୍ଡା, ମହନ୍ତ ଶିଶିର କୁମାର ଭାରତୀ ପ୍ରମୁଖ ସ୍ମରଣକୁ ଆସନ୍ତି । ଭଉଣୀ ସୁଚେତା ଏହାର ପ୍ରକାଶନରେ ସହଯୋଗର ହାତ ବଢ଼ାଇ ଥିବାରୁ ତାଙ୍କୁ ସାଧୁବାଦ । ପରିଶେଷରେ ମୋର ଧର୍ମ ପତ୍ନୀ ଶ୍ରୀମତୀ ମଂଜୁଲତାଙ୍କ ପ୍ରେରଣା ତଥା ପୁତ୍ର ଓ ପୁତ୍ରବଧୂ ମୋତେ ଏ କ୍ଷେତ୍ରରେ ଅନୁପ୍ରେରିତ କରିଛନ୍ତି । ଏ ସମସ୍ତଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରି ରହୁଛି । ଅଳଂ ଅତି ବିସ୍ତରେଣ ।

ବିନୀତ
ରଚୟିତା



# ସୂଚୀପତ୍ର





# ଗୁରୁପାଦେ ପ୍ରଣତି

ଗୁରୁ ଦତ୍ତ ଜ୍ଞାନ ଗରିଷ୍ଠ ବେଦ ଶବ୍ଦେ ମହାନ
ଆତ୍ମ ଜ୍ୟୋତି ଆଭା ଅନ୍ତରେ ଯେହ୍ନେ ଶୁଦ୍ଧ ସୁବର୍ଣ୍ଣ ।
ଅବିରତ ଗଂଗା ପ୍ଳାବନେ ଭକ୍ତେ କରଇ ପୂତ
କଲୁଷ ନାଶିନୀ ପ୍ରବାହେ ଦୂରେ ଯାଏ ଦୁରିତ ।
ସଂସାର କାମନା ବାସନା ନିତ୍ୟ କରେ ସେବନ
ଜାଗ୍ରତ ସ୍ୱପନେ ତାତହୁଁ ଭାବ ହେବ ବା ଆନ ।
ଅଳୀକ ସଂସାର କହଇ ହୃଦେ ବୋଧ ନୁହଁଇ
ସଂଗ୍ରହ ସଂଚୟେ ସଂପଦ ବୃଦ୍ଧି ସଦା ଭାଳଇ ।
ଅପର ସମ୍ପତ୍ତି ବର୍ଦ୍ଧନେ ହୃଦେ ଜଳେ ଅନଳ
ଅଶାନ୍ତି କରଇ ମାନସ ଅନ୍ତରେ ହଳାହଳ ।
କ୍ଷଣିକ ଭଙ୍ଗୁର ସଂପତ୍ତି ଆସେ ଦିବସ ନିଶି
ଆନନ୍ଦ ସ୍ୱରୂପ ପରମ ହୃଦ କନ୍ଦର ବାସୀ ।
ଆତ୍ମ ପୁରୁଷଙ୍କ ପୟର ସେ ତ ମୁକତି ଦ୍ୱାର
ସେ ପଦ ଦର୍ଶନ କାରକ ଗୁରୁ ପଦେ ଜୁହାର ॥



# ମାତୃଦେବୀ

ସୁତ ନିକଟରେ ପିଅରରୁ ବଳି ଜନନୀ ଗୁରୁ ମହତ
ଗରଭେ ଧରଇ ପାଳନ ପୋଷଣେ ସରି ନୁହଁଇ ଜଗତ ।
ମାତା ଆଦ୍ୟଗୁରୁ ସଂସାରରେ ସାର ଗଙ୍ଗାସମ ତୀର୍ଥ ନାହିଁ
ବିଷ୍ଣୁ ସମ ପ୍ରଭୁ ଜଗତରେ କାହିଁ ତାଙ୍କ ଶ୍ରୀଚରଣେ ଧ୍ୟାୟୀ ।
ଶିବ ସମ ପୂଜ୍ୟ ତ୍ରିଭୁବନେ ନାହିଁ ଏକାଦଶୀ ସମ ବ୍ରତ
ଉପବାସ ତପ ଜଗତ ବିଦିତ ମାତା ତୁଳନା ଅତୀତ ।
ଭାର୍ଯ୍ୟା ସମ ମିତ୍ର ନଥାଇ ଜଗତେ ପୁତ୍ର ପ୍ରିୟ ନୋହେ ଆନ
ଭଗିନୀର ମାନ୍ୟ ନୁହେଁ ଆନ ନାରୀ ମାତା ଗୁରୁ ଅଗ୍ରଗଣ୍ୟ ।
ଜାମାତା ସମାନ ଦାନଗ୍ରାହୀ କାହିଁ କନ୍ୟାଦାନ ଦାନେ ସାର
ଭ୍ରାତା ସମ ବନ୍ଧୁ ନଥାଇ ଜଗତେ ମାତା ଶ୍ରେଷ୍ଠ ଗୁରୁବର ।
ପତ୍ନୀ ଗରଭରେ ପୁରୁଷ ପ୍ରବେଶି ସୁତ ରୂପେ ହୁଏ ଜାତ
ପୂର୍ବଜ ପିତାଙ୍କ ଆଶ୍ରୟ କାରଣେ ମାତା ହୁଅଇ ମହତ ।
ଜନନୀ ପିଅର ଏକ ସ୍ଥାନେ ଦେଖି ମାତାଙ୍କୁ ଆଦ୍ୟେ ପ୍ରଣାମ
ପିତା ଗୁରୁବର ଉତ୍ତରେ ପ୍ରଣତି ଶାସ୍ତ୍ର ପୁରାଣ ବିଧାନ ।
ଜନନୀ ଧରିତ୍ରୀ ଦୟାର୍ଦ୍ର ହୃଦୟା ମାତା ତ୍ରିଭୁବନ ଶ୍ରେଷ୍ଠା
ଶିବା ଦେବୀ ଗୌରୀ ନିର୍ଦୋଷ ବୋଲାଇ ଦୟା ଶାନ୍ତି କ୍ଷମା ଜ୍ୟେଷ୍ଠା ।
ଗୁରୁ ସନ୍ତାପରେ ସଙ୍କଟ କାଳରେ ଦେବୀ ଦର୍ଶନ ଯେ କରେ
ତରଇ ଦୁସ୍ତର ଦାରୁଣ ଯାତନା ବିଜୟୀ ମୁକୁଟ ଶିରେ ।

ଆଶ୍ରୟ-ବୃହଦ୍ଧର୍ମ ପୁରାଣ-ପୂର୍ବଖଣ୍ଡ-ଅଧ୍ୟାୟ-୨ ,ବ୍ୟାସଜାବାଲି ସଂବାଦ



# ଭାସ୍ୱର ଜ୍ୟୋତି

ସତ୍ୟ ସ୍ୱରୂପ ନିତ୍ୟ ହେ ବିଭୁ ତ୍ରିକାଳରେ ତୁମ ନିବାସ
ସପ୍ତ ରଂଗର ତୁଳିକାରେ ତୁମ ବିଶ୍ୱ ହୁଏ ପରକାଶ ।

ନର ସଂକୁଳ ଧରଣୀ କୋଳରେ ଦଣ୍ଡେ କି ନିମିଷେ ନୁହେଁ
ଆତ୍ମ ବଡ଼ିମା ଦେଖାଇବା ଆଶେ ପଥ ଅପଥରେ ଧାଏଁ ।

ଭ୍ରାନ୍ତି କୁହେଳି ଚାରି ପାରୁଶରେ ସରଣୀ ସଂଧାନ କାହିଁ ?
ମୋହ ମଦିରାରେ ଉନ୍ମତ୍ତ ସମ ଦିବସକୁ ନିଶି କହି ।

ବିତ୍ତ ଅର୍ଜନ ଜୀବନରେ ସାର ରଙ୍କ ଅଥବା ରାଜନ
ନିତ୍ୟ ସଂଗ୍ରହ ସଂଚୟେ ଲୋଭୀତ ଗ୍ରସିତ ନିରତ ମନ ।

ଶବ୍ଦ ପରଶ ରୂପ ରଂଗ ମୋହେ ବନ୍ଦୀ ବଂଧନ ଜାଲେ
ଅନ୍ଧ ପରାୟ ଚାଲଇ ସତେ ସେ ପଦେ ପଦେ ପଥ ଭୁଲେ ।

ବ୍ରହ୍ମ ସ୍ୱରୂପ ଅନ୍ତରେ ତୋହର ଚିନ୍ମୟ ଭାସ୍ୱର ଜ୍ୟୋତି
ମୁକ୍ତି ଲଭିବୁ ଶାନ୍ତି ପାରାବାରେ ସେ ଚରଣେ ଦେଇ ମତି ॥



# ମହତ ଜନ୍ମ

ବରଷାର ଧାରା ମୃର୍ତ୍ତିକା ପରଶେ ଆବିଳ ଭାବ ଆଶ୍ରୟ
ମାନବ ଶାବକ ସଂସାର ଯାତ୍ରାରେ ହୁଅଇ କଳୁଷମୟ ।
ସ୍ୱଭାବେ ଜଳର ନିମ୍ନଗତି ପ୍ରାୟ କୁସଙ୍ଗେ ଅଧୋ ଗମନ
ସୁସଂଗ ସଂସ୍କାର ଜୀବନେ ମହତ ଯତ୍ନେ କରତା ଧାରଣ ।
ପୂର୍ବ ଭାଗ୍ୟବଳେ ସାଧୁ ସଙ୍ଗ ମିଳେ ନାହିଁ ତାହାର ତୁଳନା
ସଂସାରୀ ସଂପଦ ଭୋଗ କାମନାରେ ଲଭଇ ଘୋର ଯାତନା ।
ଇନ୍ଦ୍ରିୟ ଭୋଗରେ କ୍ଷଣିକ ତୃପତି ହୃଦେ ଜଳଇ ଅନଳ
ପ୍ରଶାନ୍ତ ମାନସେ କାହୁଁ ବା ରାଜିବ ଅଶାନ୍ତିର ହଳାହଳ ।
ସାଧୁ ସଂଗ କରି ମହତ ଜୀବନ ପଥେ ହୁଅ ଆଗୁସାର
ଇତର ପରାଣୀ ଆହାର ବିହାରେ ଜନମ ନୋହୁ ଇତର ।



# ଶରଣାଗତି

ଜୀବନ ଜୀବିକା ସଂଧାନ ଯିଏ ଅନ୍ତରେ ରହିଦିଏ
ଦର୍ଶନ କେବେ ପାଇବା ପାଇଁ କି ପ୍ରଶ୍ନ ମନରେ ହୁଏ ? ୧
ମୋହିତ ହେଉଛ ଯାହାଙ୍କ ପାଇଁ କି ବଂଧୁ ତନୟ ଦାରା
ସକଳ ସଂପଦ ମଦ ସଦନ ଅଭିମାନର ପସରା ।
ଦିବସ ରଜନୀ ସଂଗ୍ରହ ସଂଚୟେ ଅନ୍ଧ ପରାୟ ମାତି
ସଂତାପ ଅନଳେ ହୃଦୟ କନ୍ଦରେ ଅବିରତ ଉଠେ ତାତି ।
ଜନନୀ ଜଠରୁ ଜନମ କାଳରେ କିବା ଆଣିଥିଲୁ ସଂଗେ
ମରଣ କାଳରେ ତହିଁରୁ ଥୋକାଏ ଘେନିଯିବୁ କିତୁ ରଂଗେ ?
ଅର୍ଜିତ ସଂପଦ ରହିଯିବ ତହିଁ ଶୂନ୍ୟହସ୍ତେ ଯିବୁ ଚଳି
ସୋଦର ବାଂଧବ ଶମଶାନେ ନେବେ ସର୍ବେ ହୋଇଏକ ମେଳି ।
ମହିମା ମଣ୍ଡିତ ଏ ଜୀବନ ବୃଥା ପଶୁ ପ୍ରାୟ ହେଲା ଶେଷ
ଅନନ୍ତ ପୟରେ ଦୃଢ଼ ବିଶ୍ୱାସରେ ଏବେ ହୁଁ ଶରଣ ପଶ ॥

ମଦ= ଗର୍ବ
ହୃଦୟ କନ୍ଦରେ= ହୃଦୟର ନିଭୃତ ସ୍ଥାନ
ପୟରେ=ପାଦରେ



# ଧାରଣ

ଜୀବନ ଧାରଣ ନିମନ୍ତେ ନର କରେ କରମ
ଜୀବିକା ଆଦରି ଚାଲଇ ଋଜୁ ଅବା ବିଷମ ।
କର୍ମ ଶୁଭାଶୁଭ କରନ୍ତେ କର୍ତ୍ତା ବୋଲାଇ ଥାଇ
ଫଳ ଅନୁରୂପ ପ୍ରାପତି ଶାସ୍ତ୍ର ପୁରାଣ କହି ।
ଶୁଭ କର୍ମେ ହେଲେ ନିରତ ତା'ର ଫଳଟି ଶୁଭ
ଦୁର୍ଭୋର ଯାତନା ଲଭଇ କରି କର୍ମ ଅଶୁଭ ।
ସର୍ବ କର୍ମଫଳ ଭୋଗିବା ଆଶେ ଜନମି ଜୀବ
ଚକ୍ର ପ୍ରାୟ ଘୂରି ବୁଲଇ ଭୋଗୀ ଶିବ ଅଶିବ ।
କର୍ମେ କର୍ମଫଳ ନିହିତ ବିଧି ଅଦୃଶ୍ୟ ମାୟା
ଜନ୍ମ ଜନ୍ମାନ୍ତର ଭ୍ରମଣ ଧରି ବିବିଧ କାୟା ।
କର୍ତ୍ତା ଭାବ ହେଲେ ବିନାଶ ଫଳଫଳିବ କାହିଁ
କର୍ମ କର ସୁଖେ ନିରତ କର୍ତ୍ତାପଣ ନଥାଇ ।
ବୀଜ ନାଶ ହେଲେ ଅଙ୍କୁର ଅବା ରହିବ କାହିଁ
କର୍ତ୍ତା ଭୋକ୍ତା ସର୍ବ ସମର୍ପି ଚରଣେ ଭାବଗ୍ରାହୀ ।

ଋଜୁ–ସରଳ



# ପଥ ସଂଧାନ

ଆହାର ବିହାର ସଂଯୋଗ ବିଯୋଗ ନିତି ଦିବା ଗଲା ବିତି
ସଂସାର ଯାତ୍ରାରେ ଦେଖି ନବନବ ଆନନ୍ଦ, କେବେ ବା ଭୀତି ।
ଷଡ଼ରିପୁ ଯହିଁ ବସନ୍ତି ହୃଦୟେ ରାଗ ଦ୍ୱେଷ ଉପୁଜଇ
କାହାର ଦର୍ଶନ ଶ୍ରବଣରେ ମନେ ଅପାର ଆନନ୍ଦ ହୋଇ ।
ସ୍ମରଣ ମାତ୍ରକେ ହୃଦୟକନ୍ଦରେ ଶତଦଳ ଫୁଟୁଥାଇ
ବଚନ ଶ୍ରବଣ ଅସୀମ ବେପଥୁ ଭାରତୀ କୁହା ନ ଯାଇ ।
ବିଚାର ବିରୋଧି ବିଦ୍ୟାବନ୍ତ ହେଉ ନଚାହେଁ ମାନସ ତା'ରେ
ଅନ୍ତରେ ଅସୀମ ଶରଧା ଧରେ ଯେ ଦୂରେ ଥିଲେ ମନ ଝୁରେ ।
ମାନସ କଳ୍ପନା ଏ ସାରା ସଂସାର କ୍ଷଣେ କ୍ଷଣେ ହୁଏ ଆନ
ଶୈଶବ କାଳର କ୍ରୀଡ଼ନକ ପ୍ରୀତି ପଳିତ କେଶରେ ମ୍ଳାନ ।
ସୂଚାରୁ ଶୋଭନ କଳେବର ଶୋଭା କାଳାନ୍ତରେ କଦାକାର
ଚନ୍ଦ୍ରମା ବଦନୀ ଜରା ଆଘାତରେ ହସ୍ତେ ଯଷ୍ଟି ଥରଥର ।
ଚଳମାନ ମନ ଏ ସାରା ସଂସାର ଦୃଶ୍ୟ ଅଦୃଶ୍ୟରେ ଯାହା
ଅନ୍ତର ନିବାସୀ ପରମ କାରଣ ଧାଇଲେ ଲଭିବୁ ରାହା ।



# ବିଚିତ୍ର ସଂସାର

ସରାଗରେ ମନ ଯେଉଁ ଦରବରେ
ରସିଯାଇ ଥାଏ ଥରେ
ସ୍ୱଭାବରେ ତହୁଁ ଚଳଇ ଆନକୁ
ଜଣା ନପଡ଼ଇ ବାରେ ।
ଯାହାଲାଗି ଦିନେ ବ୍ୟାକୁଳ ଅନ୍ତରେ
ସ୍ୱପନ ସ୍ୱରୂପ ହୋଇ
କାଳାନ୍ତରେ ତାହା ଅଲୋଡ଼ା ଅଖୋଜା
ଶେଷେ ବିନାଶ ଲଭଇ ।
କେବେ ଦରଶନ ଲଭିବା ନିମନ୍ତେ
ଆକୁଳ ହୃଦୟ ମୋର
ଏବେ ଦେଖାହେଲେ ମାନସ କହଇ
ସତେ ଅବା ସାତପର ।
ଶତ୍ରୁ ମିତ୍ର କିଏ କେ ବନ୍ଧୁ ଆତ୍ମୀୟ
ମନର ଏ ଖେଳ ଘର
ମନର ସଂକଳ୍ପ ବିକଳ୍ପରେ ସିନା
ମାନବ ରଚେ ସଂସାର ।
ପଞ୍ଚ ଇନ୍ଦ୍ରିୟରେ ପଞ୍ଚ ବିଷୟର
ତ୍ରିଗୁଣେ ଗ୍ରସିତ ହୁଏ
ମନର ସ୍ୱଭାବ ଜାଣିଗଲେ ଆପେ
ଶତ୍ରୁ ମିତ୍ର ଭାବ ଯାଏ ।
ସମଭାବ ଚିତ୍ତେ ଉଦୟ ହୁଅନ୍ତେ
ବ୍ୟାକୁଳ ନାଶ ଅନ୍ତରୁ
ନିର୍ମଳ ମାନସେ ଦୃଶ୍ୟ ହୋଇ ସଦା
ଚିଦାନନ୍ଦ ମୟ ଗୁରୁ ॥



# ଦିବ୍ୟ ଜ୍ୟୋତି

ଗୁରୁବର ଗଙ୍ଗା ଧାର ସକଳ କଳୁଷହର ଦିବ୍ୟ ବିଭୂତି
ଶିଷ୍ୟ ସନ୍ତାପ ହରଣ ଜ୍ଞାନ ନେତ୍ର ଉନ୍ମୀଳନ ବିନାଶି ଭ୍ରାନ୍ତି ।
ସଂସାର ଲୋଭ କାମନା ସଦାମନ ଆନମନା ନଥାଇ ତୃପ୍ତି
ଲୋଭ ତହିଁ ମହାବଳୀ ବସଇ ଦ୍ୱାର ଆଗୁଳି ହରାଇ ଦୀପ୍ତି ।
କ୍ରୋଧ ତହୁଁ ବଳୀଆର ଭାଙ୍ଗଇ ଧଇର୍ଯ୍ୟ ଦ୍ୱାର ହୃଦେ ଅନଳ
ମିତ୍ର ବନ୍ଧୁ ପରିଜନ କ୍ଷଣ ଲୋଭେ ବିନାଶନ ସେ ହଳା ହଳ ।
ସକଳ ଜୀବନ କାମେ ଭ୍ରମେ ନିତ୍ୟ ଅବିରାମେ ଚକ୍ର ପରାୟ
ଶାନ୍ତି ସନ୍ତୋଷ ବିନାଶ ବହଇ ଖର ନିଃଶ୍ୱାସ ସନ୍ତାପ ମୟ ।
ବ୍ୟାକୁଳ ଅନ୍ତରେ ଯେହୁ ପରଶ ଯାହାର ମହୁ ଅତୁଳ ଭବେ
ଶାଶ୍ୱତ ସରଣୀ ଜ୍ୟୋତି ସନ୍ତାପ ହରଣେ ଖ୍ୟାତି ଆନନ୍ଦ ଜୀବେ ।
ଶ୍ରୀଗୁରୁ ତରଣୀ ଧର ଲଙ୍ଘିବୁ ଘୋର ସାଗର ସଂସାରେ ସାର
ଦିବ୍ୟଜ୍ୟୋତି ନାଶେଭ୍ରାନ୍ତି ଅନ୍ତରେ ଅପୂର୍ବ ଶାନ୍ତି ପଦେ ଜୁହାର ।



# ଆଜିର ସଂକଳ୍ପ

ଜନମ କାଳରୁ ମାତା ଗରଭରୁ ଆସିଥିଲୁ କିବା ଘେନି
ସଂଗ୍ରହ ସଂଚୟେ ମାନସରେ ଚିନ୍ତା ନଥାଇ ଦିବାରଜନୀ ।
ଭୋଜନ ଭବନ ଭ୍ରମଣ ଶୟନ ବାସ ଅଳଙ୍କାର ଯାହା
ପୂରଣ ହେଲେ ହେଁ ଅଶାନ୍ତ ଅନ୍ତରେ ନମିଳେ ସନ୍ତୋଷ ରାହା ।
କାମନା ହୁତାଶ ମୃଗତୃଷ୍ଣା ପ୍ରାୟ ସୁଦୂର ଦିଗନ୍ତେ ଦୃଶ୍ୟ
ଭ୍ରମରେ ଚାଳିତ ମାନବ ହୁଅଇ ଅବଶେଷେ ରୁଦ୍ଧଶ୍ୱାସ ।
ପରିଜନ ଜନେ ସଂତାପିତ ଯେବା ନଥାଇ ସେ ଦିଗେ ଦୃଷ୍ଟି
ଲୋଭ ଭୋଗ ମାର୍ଗେ ଉପାର୍ଜନେ ବୁଦ୍ଧି ମିଳେ କି ତହିଁରୁ ତୁଷ୍ଟି ।
ସଂସାର ସକଳ ଦରବ ଆପଣେ ହୋଇଲେ କେବେ ପ୍ରାପତ
ସଂତୋଷ ନପାଇ ମାନସ ବଳଇ ଚନ୍ଦ୍ରମା ଦିଗକୁ ହାତ ।
ଦ୍ରବ୍ୟର ଅଭାବ ପୂରଣ ହୁଅନ୍ତେ ଆନ ଆସି ହୁଏ ଉଭା
ଲୋଭରେ ଭ୍ରମିତ ମାନସ ମୋହିତ ଦେଖି ନବ ନବ ବିଭା ।
ସକଳ ପଦାର୍ଥ ରହିଯିବ ତହିଁ ନଯିବ ତିଳ ପ୍ରମାଣ
ଧର୍ମ ବଳ ଯାହା ସଂଗେ ଘେନିଯିବୁ ଅଜହୁଁ ମାନସେ ଆଣ ।



# ଅନନ୍ତ ଲାଭ

ସନ୍ତୋଷ ନହୁଏ ମାନସ ଯାହା ଅଛଇ ପାଶେ
କାମିନୀ କାଞ୍ଚନ ଭବନ ତହିଁ ମନ ନ ରସେ ।
ଅପର ସଂପଦ ସନ୍ତାନ କାମିନୀ ପ୍ରତି ଲୋଭ
ମାନସେ ତୁଳନା କରନ୍ତେ ଯାତ ହୁଅଇ କ୍ଷୋଭ ।
ସକଳ ବିଳାସ ବିଭବ ତା'ରେ ଲାଗେ ଅଲଣା
ନବୀନ ପ୍ରାସାଦ ପଲଙ୍କ ସତେ ସବୁ ପୁରୁଣା ।
ଶୁକଳ ବସନ ଘେନିଲେ ମନ ହୁଏ କି ଥୟ ?
ସନ୍ତାପ ସାଗରେ ଭାସଇ ବିତ୍ତ ହରଣ ଭୟ ।
ଅଶନ ଶୟନ ସ୍ୱପନ ସୁଖ ମିଳଇ କାହିଁ ?
ବ୍ୟାକୁଳ ଅନ୍ତରେ ସତତ ବ୍ୟାଧି ଉପୁଜେ ତହିଁ ।
ସରବ ବିଭବ ମଧ୍ୟରେ ଦୀନ ପରାୟ ତୁହି
ନିଷ୍କାମ କରମ କାରଣେ ଲାଭ ଅନନ୍ତ ଯହିଁ ।
ପୂର୍ଣ୍ଣାନନ୍ଦ ଦିବ୍ୟ ପୟରେ ଦୃଢ଼େ ଥାପି ତୁ ମତି
ସଂସାର ଆନନ୍ଦ ସାଗରେ ନିତ୍ୟ ସଂଗେ ସଂଗତି ।

ଅଶନ-ଭୋଜନ, ପୂର୍ଣ୍ଣାନନ୍ଦ-ପରମବ୍ରହ୍ମ



# (ଜନ୍ମ ମୃତ୍ୟୁ) ଚକ୍ର ନିସ୍ତାର

ଚକ୍ଷୁ ଯାହାକୁ ନପାରଇ ଦେଖି ଦୃଷ୍ଟି ପ୍ରେରଣା ଦାୟୀ
ଶକ୍ତି ସହାୟ ଲଭନ୍ତେ ସକ୍ଷମ ଚକ୍ରବାଳେ ନେତ୍ର ଯହିଁ ।

ଶ୍ରବଣ କାରଣ ବୋଲାଇ ଥାଆନ୍ତି ଯେହୁ ଚିତ୍ତ ଭୂମି ପରେ
ମନରେ ଭାବନା ସଂଚାର ବିଚାର ଅଦୃଶ୍ୟ ଶକ୍ତି ଆଧାରେ ।

ମନ ପ୍ରାଣ ଇନ୍ଦ୍ରି ସକଳ ଜଗତ ପରମ କାରଣ ସାର
ଶକତି ଲଭି ତା' ଚରାଚର ବିଶ୍ୱ ଦୃଶ୍ୟ ଅଦୃଶ୍ୟ ସଂଭାର ।

ଚାଳିତ ହୁଅନ୍ତି କର୍ତ୍ତବ୍ୟେ ନିରତ ଯହିଁରୁ ଲଭି ପ୍ରେରଣା
ସକଳ ଭୂତର ସୂତ୍ରଧର ସେହୁ ନିତ୍ୟେ ତାହାଙ୍କ ବନ୍ଦନା ।

ଜ୍ଞାନୀ ଜନ ଯାରେ ଆତ୍ମଜ୍ଞାନ ହେତୁ ଜୀବନ୍ତୁ ହୁଅନ୍ତି ମୁକ୍ତ
ଜୀବନ ମରଣ ଚକ୍ର ଆବର୍ତ୍ତରୁ ମୁକ୍ତି ଲଭନ୍ତି ସତତ ।



# ସଂକଟ ତାରଣ

ସଂସାର ସାଗରେ ଭାସିଯାଇ ଦୂରେ ଅଥଳେ ଘୂର୍ଣ୍ଣିତ ପୋତ
ଉଦ୍ଧାର କାରଣେ ଆରତେ ଡାକଇ ସଂକଟ ତାରଣ ତାତ ।

ବେଳୁ ଉଦ୍‌ବେଳିତ ପବନର ବଳ ଥୟ ନହୁଅଇ କ୍ଷଣେ
ସାହା ହେବ କିଏ ଦରିଆ ମଝିରେ ଦିଶୁ ନାହିଁ କେହି ଜଣେ ।

ସାଧୁମାନଙ୍କର ମୁଖରୁ ଶୁଣିଛି ଆପଦ ବାନ୍ଧବ ତୁମେ
ଦିଗ ହଜା ମୁହିଁ ଜଳଧି ସଲିଳେ ଜୀବନେ ଅନ୍ତିମ ଯାମେ ।

ଯେହୁ ତୁମ ନାମ ହୃଦରେ ଗୁଣଇ ହେଳେ ତରଇ ସଂସାର
ସ୍ମରଣ ନକରି ମାୟା ଭ୍ରମେ ଆଜି ହୃଦ କରେ ହା ହା କାର ।

କରୁଣା ସାଗର କ୍ଷମାମୟ ଦେବ ଅପରାଧ କ୍ଷମା କର
ଦେଇ ସଦବୁଦ୍ଧି ଶ୍ରୀପଦ କମଳେ ରହୁ ମୋ ମାନସ ଗିର ।

ଜଳଧି=ସମୁଦ୍ର, ଗିର=ବାକ୍ୟ
ଗୁଣିବା-ସ୍ମରଣ, ଜପ(କରିବା)



# ମରଣ ଭୟ ନାଶ

ବୃଥା ତର୍କ ବାକ୍ୟ ଶିଖରେ ଆରୋହୀ ପରମ ଦର୍ଶନ ନୋହେ
ହୃଦ ଦିବ୍ୟ ଭାବ ଉଦୟ ହୁଅନ୍ତେ ସ୍ୱୟଂ ଦ୍ରବୀଭୂତ ହୋଏ ।

ଆପଣା ଗରିମା ପ୍ରତିଷ୍ଠା କାରଣେ ଅହଂକାର ଥାଇ ମନେ
କଠିନ ଦ୍ରବିତ ହୁଅନ୍ତେ ସଲିଳେ ବିଲୟ ନିଜସ୍ୱ ଦାନେ ।

ମମତ୍ୱ ଅହଂତ୍ୱ ତଦାକାର ହୋଇ ହୃଦ ହୁଏ ନିରାକାର
ନିର୍ମଳ ମାନସେ ପ୍ରଭୁ ବିଶ୍ୱବାସ ରଚନ୍ତି ତହିଁ ଆଧାର ।

ସଂପଦ ପଦବୀ ପରିଜନେ ଯେବା ଅହଂକାର ଏକୀଭୂତ
ସକଳ ଅନ୍ତରୁ ଫେଡ଼ି ଦେଲେ ଥରେ ଦର୍ଶନେ ନିର୍ମଳ ଚିତ୍ତ ।

ସାଧନା ସଂଧାନ ଜୀବନରେ ଯାହା ଶୁଦ୍ଧ ମାନସ କାରଣେ
ଅଲକ୍ଷ୍ୟରେ ଆସି ତମ ଅହଂରାଶି ନାଶଇ ସାଧନା ଭ୍ରମେ ।

ଦିବ୍ୟ କୃପାବିନ୍ଦୁ ଅନ୍ତରେ ରହନ୍ତେ ଆଚରେ ଭବ ଉଦାର
ପୂର୍ଣ୍ଣାନନ୍ଦ ମୟ ମଧୁର ପ୍ରବାହ ତୁଟାଇ ଆପଣା ପର ।

ଚରାଚର ବିଶ୍ୱ ନୟନ ପଥରେ ହୋଇଯାଏ ବ୍ରହ୍ମମୟ
ସନାତନ ନିତ୍ୟ ଅନ୍ତର ବାହାର ଦୂରେ ଯାଏ ମୃତ୍ୟୁ ଭୟ ।



# ବିଭୁ ଦର୍ଶନ

ଶ୍ରୀଗୁରୁ ଚରଣେ ଶରଣ ପଶ ତୁ ସଂସାର ବାଧା ବିନାଶ
ମାନବ ଜୀବନ ମହତ କାରଣ ଅନୁଭବ ବିଶ୍ୱବାସ ।

ସଂସାର ଜଞ୍ଜାଳ ମହାହଳାହଳ ମାୟାମୟ କୁହେଳିକା
ବାନ୍ଧବ ସୋଦର କୁମର କଳତ୍ର ଅର୍ଜନେ ଯେବା ଜୀବିକା ।

ଶୈଶବ କାଳରୁ ସଂସାର ସଂପଦ ବର୍ଦ୍ଧନେ ଦେଇ ପ୍ରେରଣା
ଲୋଭୀତ ମାନସେ ଧାବିତ ହୁଅଇ ଲକ୍ଷ୍ୟହରା ପଥ ବଣା ।

ଜନମ କାଳରୁ ଜନନୀ ଜଠରୁ କିବା ଆସିଥିଲୁ ଘେନି
କୃପଣ ପଣରେ ସଂଗ୍ରହ ସଞ୍ଚୟେ ହେଉ ଏଡ଼େ ଅଭିମାନୀ ।

ଆପଣା ଅପର ଭାବନାରେ ଭାସି ସ୍ୱାର୍ଥରେ ଗତ ଜୀବନ
ଜଗତ କଲ୍ୟାଣ ଶୋଚନା କାରଣେ କେବେ ନହୁଅଇ ମନ ।

ଜୀବନ ମହାନ ସ୍ୱରୂପ ଉଦାର ଗୁରୁ ଦିଅନ୍ତି ସୂଚାଇ
ସରଣୀ ସୋପାନ କରି ଆରୋହଣ ବିଭୁ ଦର୍ଶନ ମିଳଇ ।

ବିଷୟ ଯାତନା ମରଣର ଭୀତି ଇହକାଳ ପରକାଳେ
ଅଭୟ ପୟର ଦୃଢ଼େ ଭିଡ଼ିଧର ସଂସାର ତରିବୁ ହେଳେ ।



# ପ୍ରାଣଧନ ନାରାୟଣ

କାମନା ଜ୍ୱାଳାରେ ଅନ୍ତରେ ଜଳି ଜୀବନ ହେଲା ନିଃଶେଷ
କାମ ତାଡ଼ନାରେ ଦିଗଦିଗ ଭ୍ରମି ବ୍ୟାକୁଳେ ରୁଦ୍ଧ ନିଃଶ୍ୱାସ ।
ଅନ୍ତରେ ସବାର ଅନଙ୍ଗ ପ୍ରହାର ଅପଥରେ କରି ଗତି
ପ୍ରାପତ କାହିଁବା ସୁଖର ସନ୍ଧାନ ଜଳୁଛି ଯେସନ ଭାତି ।
ଆଶା ମରୀଚିକା ସୁଖ ଜଳ ଲୋଭେ ଚକ୍ରବାଳେ ଯାଏ ଧାଇଁ
ଦିଗହଜାମା ରୁ ସଲିଳ ସନ୍ଧାନ ବାସ୍ତବେ ମିଳଇ କାହିଁ ?
କାମିନୀ ମୋହରେ ପଥଶ୍ରାନ୍ତ ପାନ୍ଥ ଶରୀର ହୋଇ ଅବଶ
ପରାଣ ବ୍ୟାକୁଳ ସନ୍ତାପିତ ସଦା ବହୁଛି ଖର ନିଃଶ୍ୱାସ ।
ରକ୍ତ ମାଂସ ମେଦ ଅସ୍ଥି ଯତ୍ନେ ରଖି ଚର୍ମ ଆଚ୍ଛାଦନ କରି
ଯତନେ ନିର୍ମାଣୀ ରଖିଛି ବିନ୍ଧାଣୀ ଭ୍ରମ ମାୟାଜାଲ ଡୋରି ।
ମାୟା ମରୀଚିକା ତୃଷା ନିବାରଣେ ହୋଇ କି ପାରେ କାରଣ
ହୃଦ ଗତେ ତାଙ୍କୁ ଦୃଢ଼େ ଥିବୁ ଧରି ପ୍ରାଣଧନ ନାରାୟଣ ।
ବିଷମ ସଂସାରେ ବିଷୟ ଅନଳେ ସଂତାପିତ ପ୍ରାଣ ପକ୍ଷୀ
ସୁଗମ ସରଣୀ ଦିବ୍ୟାନନ୍ଦ ଜ୍ୟୋତି ଢାଳି ଦିଅ ଦ୍ରଷ୍ଟା ସାକ୍ଷୀ ।



# ଦୃଢ଼ଭକ୍ତି

ରୂପ ରଂଗ ରସ ଶବଦ		ସ୍ପର୍ଶ ଇନ୍ଦ୍ରିୟ ତୋଷ
ମରୀଚିକା ପଥେ ଧାବିତ		ଅନ୍ତେ ଶେଷ ନିଃଶ୍ୱାସ ।
ଆହାର ବିହାର ଆତ୍ମଜ		ଲାଭ ପଶୁ ସ୍ୱଭାବ
ମାନବ ଜୀବନେ ପରମ		କୃପା ଅନନ୍ତ ଲାଭ ।
କାମନା ଅନଳ ଅନ୍ତରେ		ଜଳେ କରେ ଅଶାନ୍ତ
ଦେବତା ଦର୍ଶନ ମନ୍ଦିରେ		କାହୁଁ ହୋଇବେ ଶାନ୍ତ ।
ଅପରେ ଦେଖାଇ ବଡ଼ିମା		ଥୋକେ ଭୂଷଣେ ଜଡ଼ି
ଆନ ଦରଶନେ ଆଚ୍ଛାଦି		ଥାନ୍ତି ଅମୂଲ୍ୟ ଶାଢ଼ି ।
ନୟନ ରଞ୍ଜନ ବାସରେ		ରୂପ ପସରା ଧରି
ସଂସାର କାମନା ପୂରଣେ		ଇଷ୍ଟ ପଦେ ଜୁହାରି ।
କାମନା ବାସନା ପୂରୁହେ		ହାତେ ଭୋଗ ପସରା
ସଂତାପିତ ପ୍ରାଣେ ପ୍ରଭୁ ହେ		ମୋର ଖେଦ ଅସରା ।
ମୁକତି କାମନା କାରଣେ		କେବା ହୁଅଇ ନତି
ଧନ୍ୟ ତା' ଜୀବନ ଜନମ		ଧନ୍ୟ ତା'ର ଭକତି ।
ଭାବକୁ ଗ୍ରହଣ କାରଣେ		ଦେବ ଅନ୍ତର ସାକ୍ଷୀ
ଭାବଗ୍ରାହୀ ନାବେ ବସ ତୁ		ସର୍ବ ମୋହ ଉପେକ୍ଷୀ ॥



# ପଥ ଅନୁସରଣ

ନର ଅବୟବ ବିଧାତା ସୃଜନ ଜଗତେ ସାର ବୋଲାଇ
କଳୁଷ ମାନସ ଲୋଭ ବଳିଆର ବେଳୁ ବେଳ ବଢୁଥାଇ ।

ଜୀବନେ ସଂଗ୍ରହ ସଂଚୟ କାରଣେ ଧର୍ମ ନୋହିଲା ବିଚାର
ଇତର ପରାଣୀ ପରାୟ ଜନମ ଅବଶେଷେ ଯମଦ୍ୱାର ।

ଚଉରାଶୀ ଲକ୍ଷ ଭ୍ରମଣ ଜୀବର ଅନ୍ତେ ମାନବ ଜୀବନ
ମଦ ମୋହ ଲୋଭ କାମନା କାରଣେ ନାଶ ହେଲା ଅକାରଣ ।

ମହୀପତି କେତେ ଗଲେଣି ଏ ଧାମୁ କିବା ଘେନିଗଲେ ସଙ୍ଗେ
ଚତୁର ବୁଦ୍ଧିରେ ସୁବର୍ଣ୍ଣ ରଜତ ବାନ୍ଧିନେବୁ କିବା ରଙ୍ଗେ ।

ଭ୍ରମ ମାୟାଜାଲ ଆଚ୍ଛାଦି ରହିଛି ରଜୁ ସରଣୀ ଅଜଣା
ବେନି ନେତ୍ର ଥାଇ ଦିବା ଆଲୋକରେ ହେଉ ଥାନ୍ତି ପଥ ବଣା ।

ଦିବ୍ୟ ନେତ୍ରାଞ୍ଜନ କରୁଣା କଣିକା ନୟନରେ ଦିଅ ଭରି
ସଂସାର ସରଣୀ ଆଲୋକିତ କରି ଯିବି ପଥ ଅନୁସରି ।



# ବିଶ୍ୱବାସୀ

ମହତ ଜନର ହୃଦୟରେ କେବେ ନଥାଏ ଆପଣା ପର
ସନ୍ତାପ ସାଗରେ ନିଜେ ବୁଡ଼ିଯାଇ ଅପରେ କରେ ଉଦ୍ଧାର ।

ସଂସାର ବିଷମ ଯାତନାରେ ପ୍ରାଣୀ ବ୍ୟଥିତ ହୃଦୟ ଭରା
ନୟନୁ ଲୋତକ ଝରି ଅବିରତ ଦୁଃଖ ପସରା ଅସରା ।

ଆରତେ ଡାକଇ ଉଦ୍ଧାର କରତା ଫେଡ଼ ଦାରୁଣ କଷଣ
ଲିଭାଅ ଅନ୍ତର ଦାବାଗ୍ନି ଜ୍ୱଳନ ଜଳୁଛି ଯା' ଅନୁକ୍ଷଣ ।

ପରମ ପୁରୁଷ ଅବିରତ କୃପା କରିପାରେ ଅନୁଭବ
ସହାୟ ଅପରେ ଭାବନା କର୍ମରେ ଲଭିଥାଏ ଦିବ୍ୟଭାବ ।

ଭାବର ଠାକୁର ଅନ୍ତର୍ଯ୍ୟାମୀ ବିଭୁ ସର୍ବ ଅନ୍ତର ନିବାସୀ
ବଚନ ନିଥର ହୋଇଯାଏ ଯହିଁ ଉଦ୍ଧାରନ୍ତି ଦିବ୍ୟବାସୀ ।

ହୃଦୟ ଆକୁଳେ ନିବେଶିଲେ ତବ ଚରଣରେ ଏକଲୟ
ଚୁମ୍ବକ ଲୁହାକୁ ଧରିଲା ପରାୟ ନିମିଷକେ ନାଶ ଭୟ ।

ମାନବ କାହିଁବା ପଶୁ ଖଗବର ରୂପେ ହୁଅନ୍ତି ସହାୟ
ପ୍ରଣାମ ବିଭୁଙ୍କୁ ବିଶ୍ୱରୂପ ଯାର ବିଶ୍ୱ ଯାହାର କୁଳାୟ ।

କୁଳାୟ=ନୀଡ଼



# ଯଶ ବାନା ଉଡୁଥାଉ

ଚିର ଜଳଶାୟୀ ଦେବ ନାରାୟଣ ମଧୁସର କୋଳବାସୀ
ନିତ୍ୟ ନୂତନ ସୃଜନ କାରଣ ଅଜ୍ଞାନ ତମସା ନାଶି ।
ତନି ରୂପ ଧରି ସୃଜନ ପାଳନ ଅନ୍ତେ ସଂହାର କରତା
ରୂପ ଅରୂପରେ ଦୃଶ୍ୟ ଦୃଶ୍ୟାନ୍ତରେ ପୂରି ରହିଛ ବିଧାତା ।
ନାଭି କମଳରୁ ସ୍ୱୟଂଭୂ ସୃଜନ ଚର ଅଚର ବିଧାନ
ତପ ବଳେ ଆଜ୍ଞା ଲଭନ୍ତେ ଯତନେ ସୃଜିଲେ ଚତୁରାନନ ।
ଭୀତି ଉପୁଜଇ ଦର୍ଶନେ ଯାହାର ଅନନ୍ତ ଶଯ୍ୟା ଶୟନ
ବୀଣାଧାରୀ ଭଗବତୀ ବାଗୀଶ୍ୱରୀ କରନ୍ତି ଯା' ଗୁଣ ଗାନ ।
ରମା ପଦ ପ୍ରାନ୍ତେ ନିରତେ ସେବନ୍ତି ଅନ୍ତରେ କରି ଧିଆନ
କିବା ଦରବ ମୁଁ ଦେବି ଶ୍ରୀଛାମୁରେ କେଉଁ ସ୍ତୁତିକରି ଗାନ ।
ଦୀନ ଅଧମର ଅନ୍ତର ଭକତି ଶ୍ରୀରଂଗା ଚରଣେ ଥାଉ
କୃପା ପାରାବାର କରୁଣା ନିଧାନ ଯଶ ଯୁଗେଯୁଗେ ରହୁ ।

ବିଧାତା= ବ୍ରହ୍ମା, କିନ୍ତୁ ବିଷ୍ଣୁ ରୂପରେ ମଧ ପ୍ରଯୁକ୍ତ
ଯଥା- ଅନାଦି ନିଧନୋ ଧାତା ବିଧାତା... ବିଷ୍ଣୁ ସହସ୍ରନାମ-୧୮



# ଚରଣ ପଙ୍କଜେ ମନ

ମଂଗଳେ ମଧୁରେ ବିହଗ ଗାନରେ ରଜନୀ ବିଦାୟ ବେଳା
ସୁନେଲି ସୁରଂଗ ପ୍ରାଚୀ, ଦିନକରେ କମଳିନୀ ଢାଳେ ଡୋଳା ।
ମାଧବୀ ମଲ୍ଲିକା କରେ ପୁଷ୍ପାଜଂଳି ତଗର ଶ୍ୱେତଚାମର
ବିବିଧ ବରନେ ଉଭା ଶୋଭାମୟ କରବୀର କର୍ଣ୍ଣିକାର ।
ବରଷକେ ଆଜି ମାହେନ୍ଦ୍ର ଲଗନେ ସେବିବେ ପ୍ରଭୁ ପୟର
ବିଷୁବ ଲଗନେ ଦରଶନ ଦେବେ ନାରାୟଣ ରଂଗାଧର ।
ସଲିଳ ଶୟନ ତେଜି ଦେବରାୟ ଭକତେ ମୋଦ କରାଇ
ଦର୍ଶନ ମାନସେ ଆସୁଛନ୍ତି ଭକ୍ତେ ସଂଗେ ପୂଜା ଅର୍ଘ୍ୟ ନେଇ ।
ଗହଳ ଚହଳ ସାଂଗ ସାଥୀ ମେଳ ସାକ୍ଷାତ ଚିତ୍ତ ଆନନ୍ଦ
କୀର୍ତ୍ତନ ନର୍ତ୍ତନ ମହୁରୀ ମଂଗଳେ ଉଦେ ହେବେ ଆଦିକନ୍ଦ ।
ଅପୂର୍ବ ସୁଷମା ଦିବ୍ୟ ଶୋଭାରାଶି ବଚନେ ନଯାଏ କହି
ଅନ୍ତର ବେଦନା ପୂରଣ କାରଣେ ସେ ପାଦ କମଳ ଧାୟୀ ।
ସଂସାର ଯାତନା ବେଲୁ ବେଳ ବଢ଼ି ଜ୍ଞାନକରେ ବିନାଶନ
ପରମ କାରଣ ଦେବ ନାରାୟଣ ଶ୍ରୀଚରଣେ ରହୁ ମନ ।
ବିଷୟ ବାସନା ଦୂରେ ଯାଉ ଚାଲି ଶ୍ରୀପ୍ରୟରେ ରହୁ ମତି
ସନ୍ନ୍ୟାସ ଧରମ ଆଚରି ମାନସ ଲାଗିରହୁ ଦିବା ରାତି ।



# ଋତୁରାଜ ଆଶୀର୍ବାଦ

ପ୍ରକୃତି ସୁନ୍ଦରୀ ରଂଗତୁଳି ଧରି ଚିତ୍ରକାରୀ ଦିବ୍ୟ ବେଶା
ନବୀନ ସୃଜନେ ପଲ୍ଲବ ସୁମନେ ସରିତ ସାଗରେ ଭୂଷା ।
ବସନ୍ତ ଦିବସ ରଜନୀ ପ୍ରଭାତ ପ୍ରଦୋଷ ବାରୁଣୀ ଶୋଭା
ମାନବ ବିହଗ ଅରଣ୍ୟ ସଂଚାରୀ ମାନସେ ଅପୂର୍ବ ବିଭା ।
ତ୍ରିଦିବୁ ଆସନ୍ତି ଦିବ୍ୟ ରୂପ ରଙ୍ଗେ ମଣ୍ଡିଦେବେ ଧରା ମୁଖ
ସନ୍ତାପ ଯାତନା କଲୁଷ ବିନାଶି ବିତରି ସକଳେ ସୁଖ ।
ଧନୀକ ବଣିକ କୃଷକ ସୈନିକ ବିଚାର ରହିତ ସର୍ବେ
ଅନ୍ତରେ ପୂରିତ ମଦିରା ମୋହରେ ଚାଲୁଛନ୍ତି ମତ୍ତ ଗର୍ବେ ।
ଅଶାନ୍ତ ଅନଳେ ତପତ ଅନ୍ତରେ ଶୀତଳତା ଯାଏ ଦୂରେ
ପ୍ରଶାନ୍ତ ମାନସ ସନ୍ଧାନ କରଣେ ଧାଉଁଛି ମରୁ ପ୍ରାନ୍ତରେ ।
ଜଳର ଭ୍ରମରେ ଧାବିତ ହୁଅଇ ମରୀଚିକା ପାରାବାର
ଇନ୍ଦ୍ରିୟ ସନ୍ତୋଷେ ଯାଏ ଦିବାନିଶି ଜ୍ୱଳନ ସେ ଦୁର୍ନିବାର ।
ସୁଶାନ୍ତ ବିଧାନ ସନ୍ଧାନ କାରଣେ ମଧୁ ମୋହନ ମାଧୁରୀ
ବସନ୍ତ ସରାଗେ ବୋଲି ଦେଉଛ କି ମନେ ମୋହ ସୁଖ ଶିରୀ ।
ମଳୟ ପରଶେ ନବୀନ ସୁଷମା ଇନ୍ଦ୍ରିୟ ମାନସେ ଉଦେ
ସରବେ ସୁମନା ହୋଇ ହର୍ଷମନା ଋତୁରାଜ ଆଶୀର୍ବାଦେ ।
ପୂର୍ଣ୍ଣାନନ୍ଦ ଘନ ରହି ଅଭ୍ୟନ୍ତରେ ଆନନ୍ଦ ସ୍ୱରୂପ ଧରି
ବ୍ରହ୍ମାନନ୍ଦ ପ୍ରେମ କରୁଣା କଣିକା ସ୍ୱଭାବେ ଯାଉ ସଂଚରୀ ॥



# ବିଶୁଦ୍ଧ ଅନ୍ତର

ଅସୀମ ଆନନ୍ଦ ସ୍ୱରୂପ ହେ ବିଭୋ ! କରୁଣାର ମନ୍ଦାକିନୀ
ମଧୁର ପୀୟୂଷ ନିସ୍ୟନ୍ଦିନୀ ଧାର ନର କି ପାରଇ ଜାଣି ?
ଦିବସ ରଜନୀ ନିର୍ଝରିଣୀ ପ୍ରାୟ ବହିଯାଏ ଅନୁକ୍ଷଣ
ଆନନ୍ଦ ସଂଧାନ କାରଣେ ଭ୍ରମଇ ବୃଥାରେ ଗତ ଜୀବନ ।
ଇନ୍ଦ୍ରିୟ ତୃପତ ଦରବରୁ ସୁଖ ପ୍ରାପତ ଆଶା ମନରେ
କାଳାନ୍ତରେ ଦିଏ ଦାରୁଣ ଆଘାତ ବିଷାଦରେ ଚିତ୍ତ ଭରେ ।
ଆସକ୍ତି ମାନସେ ଜଡ଼େ ଯାହାପ୍ରତି ଅନ୍ତେ ଯାତନା ଆକର
ମମତା ମାଧୁର୍ଯ୍ୟ ମୋହ ସ୍ୱରୂପରେ ଘେନଇ ସ୍ୱାର୍ଥ ନିକର ।
କରୁଣା କହଇ ସଂସାର ଯାହାକୁ ଅନ୍ତେ ନିଷ୍କରୁଣ ଭାବ
ସଂସ୍କାର ଅନ୍ତର ବାହାର ପୂରିଲେ ଭାବେ ଦିବ୍ୟତ୍ୱସ୍ୱଭାବ ।
ଭାବନା ବଚନ କର୍ମେ ସଦାଚାର ମହତ ସରଣୀ ଗତି
ଅଭ୍ୟାସ ନିରତ ଆଚରଣେ ଦୃଢ଼େ ହୃଦେ ଜାଗଇ ସୁମତି ।
ବାରିଦ ପଟଳ ଉଦୟ ହୁଅନ୍ତେ ନଭ କଳୁଷ ଶୋଭନ
ତେସନ ହୃଦରେ କାମନା ବାସନା ସଂସ୍କାର ମୂଳ ଆଚ୍ଛନ୍ନ ।
ବୈରାଗ୍ୟ ଅଭ୍ୟାସ ନିରନ୍ତର ଶୁଦ୍ଧ ଅନ୍ତର କଳୁଷହାରୀ
ନିର୍ମଳ ଚିତ୍ତରେ ବିରାଜନ୍ତି ସଦାଚିର ଚିନ୍ମୟ ବିହାରୀ ॥



# ବିମଳ ମାନସ

ଜୀବନ ଜଂଜାଳସିନ୍ଧୁ କୋଳାହଳ ତହୁଁ ବଳି ହଳାହଳ
ଜଗତ ତପତ ବିଷାଦିତମୟ ଅନ୍ତରେ ଜଳେ ଅନଳ ।
ପ୍ରପଞ୍ଚ ସୁସଜ୍ଜେ ଦରଶନ କରେ ସଦା ଭ୍ରମିତ ମାନସ
ଶୟନେ ସ୍ୱପନେ ଅବା ଜାଗରଣେ ଚିତ୍ତ ନୁହଁଇ ସନ୍ତୋଷ ।
ପାଷାଣ ପ୍ରତିମା ଆଗେ ନତଜାନୁ ଭରିଦିଅ ମୋର ଥଳି
ନୈବେଦ୍ୟ ପସରା ଘେନି ମୁଁ ଆସିଛି ଏତିକି ମାତର ଅଳି ।
ତ୍ରିଗୁଣେ ଗ୍ରସିତ ମାନସରେ ମୋର ପୂର୍ଣ୍ଣ ସଂସାର ବାସନା
ଦର୍ଶନେ ତୁମ୍ଭର ଆନ ମାଗିବିକି ହୋଇ ତହୁଁ ଆନମନା ।
ଅନ୍ତରେ ବାହାରେ ପରିପୂର୍ଣ୍ଣ ତୁମ୍ଭେ ଦିବ୍ୟଭାବେ ଅନ୍ତର୍ଯ୍ୟାମୀ
ବିମଳ ଅନ୍ତର ଶୁଚି କରିଦିଅ ନହୁଏ ମୁଁ ଖଳ କାମୀ ।
ଅପାର ଶକତି ଆକର ହେ ପ୍ରଭୋ ! କିଏ ବା କରେ କଳନା
ଶୋଧିତ ଅନ୍ତରେ ତୁମ ଛବି ସିନା ରଖିପାରେ ମହାମନା ।
ଶ୍ରୀଦେବ ଚରଣେ ଆକୁଳ ପରାଣେ କରେ ଏହି ନିବେଦନ
କରୁଣା କଣିକା ପ୍ରସାଦେ ନିର୍ମଳ ହୋଇଯାଉ ମୋର ମନ ।
ବିକ୍ଷେପ ମଳର ଆବରଣ ଦୋଷୁ ଲଭିପାରିଲେ ଉଦ୍ଧାର
ବିମଳ ଚିତ୍ତରେ ପ୍ରତିଭାତ ହେବେ ଚିନ୍ମୟ ଜଗଦାଧାର ।

୧. ବିକ୍ଷେପ- ଚିତ୍ତର ଚଞ୍ଚଳତାକୁ କୁହାଯାଏ ।
୨. ମଳଦୋଷ- ମନ, ବଚନ କର୍ମଦ୍ୱାରା ଅନ୍ୟପ୍ରାଣୀଙ୍କୁ ଦୁଃଖଦେବା ପାପୀ ମଳିନ ମନର ଲକ୍ଷଣ ।
୩. ଆବରଣ- ନିଜେ ଆତ୍ମ ସ୍ୱରୂପକୁ ନଜାଣି ସ୍ୱୟଂକୁ ଦେହ ସଂଘାତ ରୂପେ ଜାଣିବାକୁ ଆବରଣ ଦୋଷ କୁହାଯାଏ ।



# ମୁକ୍ତି ହିଁ ମୁକ୍ତି

ଇନ୍ଦ୍ରିୟ ଭୋଗ କାମନାରେ ଗତ ନିଶିଦିବଶ
ଦର୍ଶନ ପରଶ ଆସ୍ୱାଦେ ଶ୍ରବଣେ ମନ ବଶ ।
ତ୍ରିଗୁଣେ ଗ୍ରସିତ ମାନସ ବଳୀ କାମ ରାଜନ
କବଳୁ କିଏ ବା ମୁକତ ହେବା ଅର୍ଥେ ଭାଜନ ।
ଇତର ଜୀବରୁ ମାନବ ଅବା ସିଦ୍ଧ ଚାରଣ
ଦେବତା ସକଳେ ନୁହଁନ୍ତି ତହୁଁ କେହୁ ବାରଣ ।
ଲୋଭିତ ମାନସ ଆଚ୍ଛାଦି ଲୋଭ ପାଶରେ ବନ୍ଦୀ
ବୟସ ବଢ଼ନ୍ତେ ପାପରେ ଦୃଢ଼େ ହୁଅଇ ଛନ୍ଦି ।
କିଶୋର ଯୌବନ ହୁଅନ୍ତେ କ୍ରୋଧ ଜଳେ ଅନ୍ତରେ
ନଳିଭି ଜଳଇ ସ୍ୱଭିରେ ଚିତ୍ତେ ସନ୍ତାପ ପୂରେ ।
ମୋହିତ ମାନସ ମୋହନ ପରିବାର କାମନା
ମୋର ମୋର କହି ଭାଳଇ ବେଳୁ ବେଳ ଯାତନା ।
ସନ୍ତୋଷ କାହୁଁ ବା ପ୍ରାପତ ଜଳି ଚିତ୍ତେ ହୁତାଶ
ଅନଳେ ଯତନେ ଇନ୍ଧନ ଘୃତ ଯେହ୍ନେ ପ୍ରକାଶ ।
ସକଳ ରିପୁଙ୍କୁ ଜାଣିଲେ ତହୁଁ ହେବୁ ମୁକତ
ଗୁରୁ ସେବା ସତସଙ୍ଗରେ ହେବୁ ତୁହି ମହତ ।
ମହତ ଆଶ୍ରୟ କରନ୍ତେ ହୃଦ ହେବ ବିସ୍ତାର
ଉଦାର ଅନ୍ତରେ ବିଭୁଙ୍କୁ ଧ୍ୟାୟୀ ହେବୁ ନିସ୍ତାର ।



# ଯୋଗାନନ୍ଦ

ଭୋଗ ଭାବନାରେ ବିଭୋର ମାନବ ସଂଗ୍ରହ ସଞ୍ଚୟେ ମତି
ଦିବସ ରଜନୀ ଅବିରାମ ଧାଏଁ ଗୃହୀ ହେଉ ଅବା ଯତି ।
ସକଳ ଭୋଗରେ ମୂଳଟି ଶରୀର ତା'ବିନୁ ଭୋଗ ବା କାହିଁ ?
ନିରତ ଭୋଗରେ ରୋଗ ସଂଚରଇ ଗୁରୁ ଶାସ୍ତ୍ର ବାକ୍ୟ ଯହିଁ ।
ବୟସ ସୋପାନେ ପାଳନ ପୋଷଣ ଆନ ସମାଜ ବିଷୟ
ଯୋଗ୍ୟତା ମାନ୍ୟତା ବୃଦ୍ଧି ବହୁଗୁଣ ତା'ପାଇଁ ହୃଦେ ଆଶ୍ରୟ ।
ବ୍ୟାଧି କଳେବରେ ପ୍ରବେଶ ହୁଅନ୍ତେ ହୃଦେ ଜଳେ ଚିନ୍ତାନଳ
ସନ୍ତପ୍ତ ମାନସେ ମରଣ ଭୟରେ ହୁଅଇ ସଦା ଆକୁଳ ।
ବେଳ ହୁଁ ଯୋଗରେ ନିବେଶି ଅଭ୍ୟାସୀ ପ୍ରାଣ ସଂଯମ କାରଣେ
ଆସନ ସାଧନେ ବ୍ରତୀ ହୋଇଥିଲେ ଜିଣି ଜୀବନେ ମରଣେ ।
ଗୁରୁଦତ୍ତ ବିଦ୍ୟା ନଲାଗଇ ବାଧା ବାହ୍ୟ ଅନ୍ତର ବିମଳ
ସଂସାରୀ ହେଇ ତୁ ବାସନା ବିରାଗୀ ପଦ୍ମ ପତ୍ରେ ଯେହ୍ନେ ଜଳ ।
ଯାବତ କରମ ସାଧନ କରିବୁ ହୃଦପଦ୍ମେ ସଦାନନ୍ଦ
ନିରନ୍ତର ପ୍ରେମେ ଲାଗି ରହିଥିଲେ ଭେଟିବୁ ଚିନ୍ମୟାନନ୍ଦ ।

ଆଶୟ= ହୃଦୟରେ ବ୍ୟାକୁଳତା



# ଧର୍ମବଳ

ଯୌବନେ ନୟନ ପ୍ରଥେ ଦୃଶ୍ୟ ଜାୟା ମୁଖ ନିନ୍ଦିତ ଚନ୍ଦ୍ରମା
କାଳାନ୍ତେ ସଂସାର ବାଡ଼ବ ତ୍ରାସରେ ଦିଶେ ମୁଖ ରବି ସମା ।
ଜୀବନ ପ୍ରବାହ ବନ୍ଧୁର ସରଣୀ ମାୟା ମୋହ ଲୋଭ ଗତି
ନୟନ ରଞ୍ଜନ ଲାବଣ୍ୟ ପ୍ରତିମା ଦର୍ଶନେ ନବଳେ ମତି ।
ଦୁହିତା କୁମର ଜନନୀ ପିଅର ଅଳି ତାଙ୍କ ଦିବା ନିଶି
ପୂରଣ କାରଣେ ଧନ୍ଦି ହୋଇ ମରେ ମ୍ଳାନ ଭଜେ ମୁଖ ଶଶୀ ।
ଅପର ଆଳୟେ ନବଦ୍ରବ୍ୟ ଦେଖି ଚିତ୍ତେ ଦାରୁଣ ଅନଳ
ଉତ୍ତମ ତହିଁରୁ ପ୍ରାପତ ନୋହିଲେ ବିଷ ଉଦ୍‌ଗାରେ ସେ ବ୍ୟାଳ ।
କାମନା ବିଚିତ୍ର ରଂଗରେ ରଞ୍ଜିତ ଆସେ ନାନା ରୂପଧରି
ପୂରଣରେ ଆନ ଶତ ମୁଖ ଧରି ହୃଦ ଦିଅନ୍ତି ବିଦାରି ।
ସୈକତ ପାଷାଣ କଣ୍ଟକ ସରଣୀ କାହିଁ ରଜୁ ବକ୍ର ଦେଖି
ମାଧୁର୍ଯ୍ୟ ପ୍ରତିମା ରୂପ ମାଧୁରୀମା ଏବେ ସେହୁ ଜ୍ୱାଳାମୁଖୀ ।
ସକଳ ଜଞ୍ଜାଳ ବିଭୁ ପାଦେ ଦେଇ ନିଷ୍କାମ ଭାବରେ ଚଳ
ସମର୍ପି ତାହାଙ୍କୁ ଭଲ ଅବା ମନ୍ଦ ଅନ୍ତେ ଲଭି ଧର୍ମ ବଳ ।

ବାଡ଼ବ- ସମୁଦ୍ରରେ ସୃଷ୍ଟି ଅଗ୍ନି
ବ୍ୟାଳ- ସର୍ପ, ଜ୍ୱାଳାମୁଖୀ- ଆଗ୍ନେୟଗିରି
ନିନ୍ଦିତ ଚନ୍ଦ୍ରମା- ଚନ୍ଦ୍ରଠାରୁ ଯେଉଁ ମୁଖ ଅଧିକ ସୁନ୍ଦର,
ସୂର୍ଯ୍ୟସମା - ସୂର୍ଯ୍ୟଙ୍କ ପରି ତେଜିଆନ,
ଅନ୍ୟ ଘରେ ଭଲ ଜିନିଷ ଦେଖିଲେ ମୋର ନାହିଁ, ଏଥିପାଇଁ ହେଉଥିବା ବ୍ୟାକୁଳତା ।



# ଭୟନାଶ

ସଂସାରେ ମୋହନ ରୂପ ଦରଶନେ ମନ ତହିଁକି ଚଳଇ
ଭ୍ରମିତ ମାନସ ଭୋଗ କାମନାରେ ନିରନ୍ତର ଭ୍ରମୁଥାଇ ।

ଆହାର ଲାଳସା ଅନ୍ତର ବାସନା ପୂରଣ କରିବା ଆଶେ
ଧାବିତ ମାନସ ଇନ୍ଦ୍ରିୟ ଶରୀର ଚଳିଥାନ୍ତି ଅବଶେଷେ ।

ପ୍ରାପତରେ ସୁଖୀ କ୍ଷଣ କାଳମନ ସୁଖ ସାଗରେ ଭାସଇ
କାଳନ୍ତରେ ଆନ ପ୍ରାପତି କାରଣେ ବ୍ୟାକୁଳିତ ପ୍ରାଣ ହୋଇ ।

ସଂତାପ ଅନଳେ ଦଗ୍‌ଧିଭୂତ ଚିତ୍ତ ରୁଦ୍ଧ ହୁଏ ଶେଷ ଶ୍ୱାସ
ଚିନ୍ମୟ ସୁନ୍ଦର ଅନ୍ତରେ ରାଜିତ ତହିଁ ନୋହିଲା ବିଶ୍ୱାସ ।

ହୃଦୟ କନ୍ଦରେ ବିରାଜିତ ବିଭୁ ଚିଦାନନ୍ଦଘନ ମୂର୍ତ୍ତି
ଶାଶ୍ୱତ ଆନନ୍ଦ ମନ୍ଦାକିନୀ ଧାରା ବିଶ୍ୱ ବିମୋହନ ପ୍ରୀତି ।

ବିମଳ ମାନସେ ତାଙ୍କ ପାଦେ ମତି ନିବେଶି ହୁଅ ତୁ ଥୟ
ପରମ କାରଣ କରୁଣା କଣିକା ନାଶିବ ସକଳ ଭୟ ।



# ପାଦ କମଳେ ମାନସ

ଅବ୍ୟକ୍ତ ଅନନ୍ତ ପୂର୍ଣ୍ଣାନନ୍ଦ ବ୍ରହ୍ମ ବାଣୀ ନ ପାରି ପ୍ରକାଶି
ସୃଷ୍ଟିର ସର୍ଜନ ବିଧାନ କାରଣେ ନାନା ବିଧେ ବ୍ରହ୍ମରାଶି ।

ପ୍ରକୃତି ସ୍ୱରୂପ ସମ୍ଭୂତ ହୋଇଲା ତ୍ରିଗୁଣେ ମାୟା ବିଧାନ
ଗୋପନେ ଯତନେ ମଉନେ ରହିଛ ସର୍ଷପରେ ସାନୁମାନ ।

ପଞ୍ଚଭୂତେ ସର୍ଜି ଏ ସାରା ସଂସାର ପ୍ରପଞ୍ଚର ଖେଳଘର
ସାଗର ସରିତ ଶଇଳ ନିର୍ଝର କାନନ ଲତା କାନ୍ତାର ।

ଅଦୃଶ୍ୟ ରଜ୍ଜୁରେ ସଯତ୍ନେ ଗ୍ରଥିତ ଗ୍ରହ ତାରା ମେଘମାଳା
ଗ୍ରୀଷମ ବରଷା ହେମନ୍ତ ବସନ୍ତ ଧରଣୀ ରାଣୀ ମେଖଳା ।

ମାନବ ଅନ୍ତର ତ୍ରିଗୁଣ ଗ୍ରସିତ ଅନୁରୂପ ଆଚରଣ
ଯୋଗ ଅବା ଭୋଗ ପୂର୍ବ ସାଧନାର ଫଳ ଭୋଗେ ଅନୁକ୍ଷଣ ।

ମହତ ଜନମ ଆତ୍ମାର କଲ୍ୟାଣ ବିଭୁ ଗୁରୁ କୃପା ବଳେ
ମାନସ ନିବେଶି ସେ ପାଦ କମଳେ ତରି ଭବସିନ୍ଧୁ ହେଳେ ।

ସର୍ଷପ- ସୋରିଷ, ସାନୁ- ପର୍ବତ,
ପ୍ରପଞ୍ଚ- ଦୃଶ୍ୟମାନ ମାୟିକ ସଂସାର



# ନିରନ୍ତରଧ୍ୟାନ

ରୂପ ଗରବିଣୀ ରୂପର ପ୍ରସରା ଧରି ଚାଲେ ମଦ ମତ୍ତେ
ଶୋଭା ରାଶିଫୁଟି ଶତଦଳ ଲୁଟି ହୋଇଯାଏ ପଦ ପାତେ ।
ପଥେ ପାନ୍ଥଦେଖେ ବିମୋହନ ଛବି ସ୍ୱର୍ଗୁ ଅବା ଅବତରୀ
ଧାତା କେତେକାଳ ସୃଜିଛି ଲାବଣ୍ୟ ମୋହନ ରୂପ ମାଧୁରୀ ।
ବସନ୍ତର ଅନ୍ତେ ଧରାରେ ଆଗମ ଯେସନେ ନିଦାଘ କାଳ
ଜୀବନ ଯୌବନ ବିଦାୟ ଘେନନ୍ତେ ମଳିନ ମୁଖ ମଣ୍ଡଳ ।
ତାରୁଣ୍ୟ ସୁଷମା ରୂପର ପସରା ଅନ୍ତେ ମଉଳା କୁସୁମ
ନୟନ ରଞ୍ଜନ ମନଲୋଭା ଶୋଭା ପ୍ରାତେ ଦୀପଶିଖା ସମ ।
ଲାବଣ୍ୟ ଦର୍ପଣ ରୂପ ରଂଗ ଦ୍ୟୁତି ବିଧି ବିଧାନ ସୃଜନ
ଧନ୍ୟ ସେହି ବିଭୁ ରଚିଛନ୍ତି ଯାରେ ଦିବ୍ୟ ସୁଷମା ମୋହନ ।
ରୂପ ରଂଗ ଶୋଭା କିବା ପ୍ରୟୋଜନ ଅନ୍ତର ନୋହି ବିମଳ
କଳୁଷ ଅନ୍ତରେ ରୂପର ପସରା ଜୀବନରେ କେଉଁ ଫଳ ।
ଶରୀର ସମ୍ପଦ ସନ୍ତାନ ଦୁହିତା ସବୁ ତ ତାଙ୍କରି ଦାନ
କୃତାଞ୍ଜଳି ପୁଟେ ପ୍ରଣମି ତାପଦେ ନିରନ୍ତରେ ରଖ ଧ୍ୟାନ ।

ରୂପ ଅପେକ୍ଷା ବିଶୁଦ୍ଧ ଅନ୍ତର ଜୀବନରେ ଉପଯୋଗୀ । ଯାହା ପ୍ରାପ୍ତ ହୋଇଛି ସବୁ ତାଙ୍କ କୃପା, ଏଥିପାଇଁ ତାଙ୍କୁ କୃତଜ୍ଞତା ନିବେଦନ କରିବା ।



# ଜୀବନ ସରଣୀ ବୋଧ

ଦିବା ନିଶି ମନେ ଭାଳୁଛ ଯାହାକୁ ପ୍ରାଣରୁ ଅଧିକ କରି
ଦର୍ଶନେ ଯାହାର ତୃପତ ମାନସ ହାତେ ଅବା ସ୍ୱର୍ଗ ଶିରୀ ।
ହୋଇ ଆତ୍ମହରା ସୁଖର ପସରା ଭାଳୁ ଅନୁକ୍ଷଣ ଯା'ରେ
କର୍ତ୍ତବ୍ୟ କର୍ମରେ ନ ଲାଗଇ ମନ ଧ୍ୟାନ ନିହି ତାହାଠାରେ ।
କେବେ ସଂଯୋଗରେ ପରଶ ଲଭିଲେ ମନ ଗଗନ ଖେଳଇ
ବିଯୋଗ କାରଣେ ବିଧୂର ପରାଣେ ଅକୁହା ଖେଦେ ଭାଳଇ ।
ବିମୋହନ ସୁଖ ଅସରା ମାଧୁରୀ ଯାହାକୁ ଚିନ୍ତୁଛୁ ମନେ
କାଳାନ୍ତରେ ମାୟା ଅପସରି ଯାନ୍ତେ ସତ୍ୟ ସାକ୍ଷାତ ନୟନେ ।
ଚର୍ମର ପିତୁଳା ରକ୍ତ ମେଦ ଅସ୍ଥି ପଞ୍ଚଭୂତ କଳେବର
ନୟନ ରଂଜନ ମାୟା ବିମୋହନ ଭ୍ରମରେ କରେ ଅସ୍ଥିର ।
ମୋହ ମଦିରାରେ ମତ୍ତ ହୋଇ ନରେ ଭ୍ରମ କାମନା କୁହେଳି
ଗତ ଯୁବାକାଳେ ଶୁକ୍ଳକେଶ ଜାଳେ ଅଶାନ୍ତ ମାନସେ ଭାଳି ।
ଅନ୍ତରେ କାମନା ଭ୍ରମରେ ପକାଇ ଅପଥେ ଜୀବନ ସାରା
ଜାଣିଲେ ତାହାଙ୍କୁ ଅବଶ୍ୟ ଜିଣିବୁ ସ୍ୱୟଂ ମୁଁ ମଧୁ ପସରା ।
ଆନନ୍ଦ ସାଗରୁ ସଂଭୂତ ହୋଇଛି ଆନନ୍ଦ ମଧୁରେ ଗତି
ମଧୁ ପାର୍ବଣ ମୋ ଜୀବନ ସରଣୀ ବୋଧରେ ସ୍ୱୟଂ ମୁକତି ।

ବୋଧ- ନିଜେ ତୁମେ ଅବିନାଶୀ ଆତ୍ମା ଏହାକୁ ମନରେ ଧାରଣ କରିବା । ଖାଲି ମୁହଁରେ କହି ଦେବା ନୁହେଁ । ଯୌବନରେ ରୂପକ ଆକର୍ଷଣ ମନୁଷ୍ୟକୁ ବିଭ୍ରାନ୍ତି କହିଥାଏ । ପୌଢ଼ ଅବସ୍ଥାରେ ମଧ ଏହି ଭାବ ଅନେକଙ୍କୁ କବଳିତ କରିଥାଏ ।

ସଂଯୋଗ = ସୁଯୋଗ, ପରିସ୍ଥିତି କ୍ରମେ ।



# ଆତ୍ମଭାବ ଉଦୟ

କୋଳାହଳ ମୟ ଏ ଦୃଶ୍ୟ ଜଗତ ଯେସନେ ସିନ୍ଧୁ ତରଙ୍ଗ
ପ୍ରତିକ୍ଷଣ ହୃଦେ ଅଙ୍କିତ ରାଜିତ ଇନ୍ଦ୍ରଧନୁ ସପ୍ତରଙ୍ଗ ।
ପଞ୍ଚଇନ୍ଦ୍ରି ସୁଖ ତ୍ରିଗୁଣ ମାନସ ତୃପତ କାରଣ ଆଶେ
ସଦାଚାର ପଥ ବିମୁଖ ସତତ ସଂସାର କାମନା ପାଶେ ।
ଆପଣା କାମନା ପୂରଣ ହୁଅନ୍ତେ ଅହଂତ୍ୱ ମମତ୍ୱ ଭାବେ
କୁଟୁମ୍ବ ସ୍ୱଜନ ଲାଳସା କାରଣେ ଧନ୍ଦି ହୁଅଇ ସ୍ୱଭାବେ ।
କାମନା ସହସ୍ର ଜିହ୍ୱା ବିସ୍ତାରଇ ଦଗ୍ଧ କରାଇ ଅନ୍ତର
ମାୟିକ ମୋହନ ପାଶରୁ ମୁକତ ହୋଇବା ଅତି ଦୁଷ୍କର ।
ଲୋଭୀତ ଅନ୍ତର ନିରନ୍ତର ଆଶା ସଂଗ୍ରହ ସଂଚୟେ ମତି
ଦାରୁଣ ଯାତନା ପ୍ରତି ପଦପାତେ ଦେଉଥାଏ ଦିବାରାତି ।
ଯୁବାକାଳେ କାମ ଅନ୍ତର ତାଡ଼ନା ଦିବାନାଶି ଏକାକାର
ବିପରୀତ ପ୍ରତି ମୋହ ଆକର୍ଷଣ ଚିତ୍ତେ ଜ୍ୱଳନ୍ତ ଅଂଗାର ।
ଶୈଶବ ଯୌବନ ସ୍ଥବିର ଶରୀରେ ଅଚଳଭାବେ ଯେ ରହି
ଜୀବନ ସଂଗୀତ ଲହରୀ ଯା'ଠାରୁ ଅରୂପ ନିଧି ବିଦେହୀ ।
ପଞ୍ଚଭୂତେ ଯନ୍ତେ ଗଢ଼ା ହୋଇଅଛି ପଞ୍ଚଭୂତେ ଯିବ ମିଶି
ଶାଶ୍ୱତ ପୁରୁଷ ଅନ୍ତର ନିବାସୀ ତୁହି ସ୍ୱୟଂ ବ୍ରହ୍ମରାଶି ।
ଆପେ ବ୍ରହ୍ମ ତୁହି ବୋଧ ହୋଇଗଲେ ଯାବତ ସନ୍ତାପ ଯିବ
କାମନା ବାସନା କଳୁଷ ବିନାଶ ଆତ୍ମଭାବ ଉଦେ ହେବ ।

ଆତ୍ମଭାବ=ମୁଁ ହିଁ ବ୍ରହ୍ମ ଏହି ଭାବନା
ବିପରୀତ=ବିପରିତ ଲିଂଗ



# ଦିବ୍ୟ ଦର୍ଶନ

ମାୟିକ ବିଧାନ ସଂସାର ମୋହି ନୟନ ମନ
ଲୋଭୀତ ମାନସେ ହୃଦୟେ ବଢ଼ଇ ଦିନୁ ଦିନ ।
ଅସତ୍ୟ ଭାଷଣ କୁତର୍କ ବୁଦ୍ଧି ଆସଇ ମନେ
ଯାବତ ଅଧର୍ମ କରଣୀ ତହିଁ ଶାସ୍ତ୍ର ପୁରାଣେ ।
ମାନସ ପ୍ରବୋଧି ସେ ମାର୍ଗେ ଚଳେ ତ୍ୱରିତ ପଦେ
ସଂଗ୍ରହ ସଂଚୟେ କୁଟୀଳ ବୁଦ୍ଧି ଆଚରି ବାଦେ ।
ଇତରେ ମଣଇ ଶୃଗାଳ ଆପେ କେଶରୀ ସମ
ସମାନ କିପରି ହେବ ବା ଭିନ୍ନ ସୃଷ୍ଟି ବିଧାନ ।
ସଂପଦ ଯାହାକୁ ମଣୁଛୁ ସେହି ଅନର୍ଥ ଘୋର
ପାଇବୁ ଯା' ପାଇଁ ସଂତାପ କ୍ଲେଶ ମନେ ଅପାର ।
ସଂପତ୍ତି ପ୍ରାପତ କାରଣେ ସର୍ବେ ସ୍ୱାର୍ଥରେ ବଶ
ସାଧନ ସ୍ୱାର୍ଥର ହୋଇଲେ ଯିବେ ନିଜ ନିବାସ ।
ଅସ୍ଥିର ଜୀବନ, ସଂପଦ ତୁଚ୍ଛ, ମାୟା ଭିଆଣ
ନୟନେ ଅଜ୍ଞାନ ପଟଳ ଥୋଇ ହରନ୍ତି ମନ ।
ବିଶୁଦ୍ଧ ମାନସେ ଦର୍ଶନ କରି ଦିବ୍ୟ ଚେତନ
ମାନବ ଶରୀର ଲାଭରେ ହେତୁ ବିଭୁ ଦର୍ଶନ ।
ଅଳୀକ ମୋହ ବିନାଶନ ଦିବ୍ୟ ଭାବ ଉଦୟ
ଚିଦାନନ୍ଦ ଘନ ଦର୍ଶନେ ନାଶ ସକଳ ଭୟ ।



# ଆଶ୍ରା ବିଭୁ ପୟର

ବିନାଶ ତିମିର କାଳିମା ନିଶା ବିଦାୟ ବେଳା
ଉଦେ ହେବେ ଦିନବାନ୍ଧବ ଧରା ଜ୍ୟୋତି ପଖଳା ।
ପ୍ରାଚୀ ଗଗନରୁ ଲୁଚିଲା ଶୁକ୍ର ତାରକା ଆଭା
ଶଶୀ ଶୀତ ଶୋଭା ହଜିଲା ଲଭି ଅରୁଣ ପ୍ରଭା ।
ରଂଗିମା ରାଗ ଦିବାକର ଜ୍ୟୋତି ପଡ଼ନ୍ତେ ଧରା
ଅନିଳ ବାରଣ ସଂଚରି ଦିଏ ବାର୍ତ୍ତା ଅସରା ।
ଯୋଗୀ ଋଷି ବୃନ୍ଦ ସେକାଳେ ଦିବ୍ୟ ଚେତନା ଲଭି
ବନ୍ଦୀ ସେ ପରମ ପୟରେ ହୃଦ କମଳେ ଦ୍ରବି ।
କାୟ ଶିର ଗ୍ରୀବା ସଳଖି ପଦ୍ମ ଆସନ ପାତି
ନାସାଗ୍ର ଏକାଗ୍ର ସାଧନା ଦୃଶ୍ୟ ଜ୍ୟୋତି ମୂରତି ।
ଜ୍ଞାନ ନେତ୍ରେ ଦୃଶ୍ୟ ବିଭବ ବାଣୀ ନୋହେ ପ୍ରକାଶି
ଅନୁଭବୀ ହୃଦେ ଯତନେ ସଂସାର ମୋହ ନାଶି ।
କାମିନୀ କାଞ୍ଚନ ମୋହନ ମାନ ସଂସାର ସୁଖ
ତୁଟଇ ଅନ୍ତରେ ଉଦୟ ଦିବ୍ୟ ଜ୍ୟୋତି ମୟୂଖ ।
ଆଲୋକ ବର୍ତ୍ତିକା ଯେସନ ନାଶେ ତମସା ଘୋର
ଅଜ୍ଞାନ ତିମିର ନାଶନେ ଆଶ୍ରା ବିଭୁ ପୟର ।



# ସାଗର ଲଙ୍ଘନ

ପଞ୍ଚଭୂତେ ଯତ୍ନେ ଗଠିତ ଶରୀର ବିଚିତ୍ର କର୍ମା ବିଧାନ
ସୂକ୍ଷ୍ମରୂପେ ଘଟେ ରାଜିତ ତୁହିଁରେ ବିଧାତା ବିଶ୍ୱ ମୋହନ ।
ଦୃଶ୍ୟ କଳେବରେ ସତ୍ତ୍ୱ ରଜ ତମ ତ୍ରିଗୁଣ ରଜ୍ଜୁରେ ବନ୍ଧା
କାମ କ୍ରୋଧ ଲୋଭ ଷଡ଼ ରିପୁ ଗଣେ ହୃଦରେ ରଚନ୍ତି ଧନ୍ଦା ।
ଚଉରାଶି ଲକ୍ଷ ଯୋନି ପରିଭ୍ରମି ଶେଷେ ମାନବ ଶରୀର
ବିଷୟା ସେବନ ଆହାର ବିନୋଦ ଅନ୍ତେ ମୃତ୍ୟୁ ପାରାବାର ।
ଜୀବନ ଆଧାର ଉପାୟ ଜୀବିକା ସଂପଦ ସଂଚୟ ଅର୍ଥେ
ବିବିଧ ବୃତ୍ତିରେ ଜଡ଼ିତ କାମନା ପୂରଣ ଆଶେ ବି ଅର୍ଥେ ।
ସାଗର ଲହରି କିଏ ବା ଗଣିବ ମନେ ଆଶା ଅସୁମାରୀ
ଗୋଟିଏ ଯତନେ ପୂରଣ ନୋହୁଣୁ ଆନ ଉଭା ଦଣ୍ଡଧରୀ ।
ଆଶା ମରିଚିକା ପାନେ ତୃପ୍ତି କାହିଁ ମାନବ ଅନ୍ତର ହେବ
ଭ୍ରମ ପଥଶ୍ରମ ଧାମନ୍ତେ ଜୀବନେ ସଂତୋଷ ହିଁ ଦୂରେ ଯିବ ।
ଦେହ ନୁହେଁ ମୁହିଁ ଦୈବତ ଶାଶ୍ୱତ ଯାତ୍ରୀ ଅନନ୍ତ ଯାତ୍ରାର
ଆତ୍ମଜ୍ଞାନ ବଳେ ସାଧନା ଶିରୀରେ ଲଙ୍ଘିବି ସେ ଅକୂପାର ।



# ପରମାନନ୍ଦ ଲାଭ

ଅନନ୍ତ କାଳରୁ ଅପାର ଘଟରେ ଲଭିଛି ଜୀବ ଯାତନା
ମାନବ ଜନମ ଧାରଣ କାରଣେ ପୂରିବ ସର୍ବ ବାସନା ।
ଶରୀର ବନ୍ଧନ ଅଜ୍ଞାନତା ହେତୁ ଭ୍ରମି ନାନା କଳେବର
ଜ୍ଞାନର ଉଦୟ ଦୃଶ୍ୟ ଦୟାମୟ ନିମିତ୍ତ ନର ଶରୀର ।
ପରମ ପୁରୁଷ ପ୍ରଭୁ ଜଗଦୀଶ କରୁଣା କଣିକା ଆଶ
କରୁଣା ସାଗର କୃପାରୁ ଶରୀର ସଂପଦ ସ୍ୱଜନ ବାସ ।
ଆପଣା ପୌରୁଷ ଭ୍ରାନ୍ତ ଅହଂକାର ସମର୍ପି ବିଭୁ ପୟରେ
ଆତ୍ମ ନିବେଦନ ପୂର୍ଣ୍ଣ ନିର୍ଭରଣ ସାକ୍ଷାତ ସେ ପାରାବାରେ ।
କୃପା ମାତାଙ୍କର ଶରଣରେ ପଶ ତେଜି ସଂସାର ଭାବନା
ବନ୍ଧୁର ସରଣୀ ସରଳ ସରସ ଆପେ ହେବୁ ମୋଦ ମନା ।
ପାର୍ଥିବ ସଂପଦ ଆପଣାର ଭାବି ଚଳନ୍ତେ ଖେଦ ପ୍ରତୁଳ
ଭାବନା ପରମ ଦିଗରେ ଚଳନ୍ତେ ଶାନ୍ତ ସକଳ ଉଦ୍‌ବେଳ ।
ପ୍ରଶାନ୍ତ ମାନସେ ବିଭୁ ପ୍ରତିବିମ୍ବ ନିସ୍ତରଂଗ ବାରି ଚାନ୍ଦ
ସଂସାର ମୋହନ ସରଣୀରେ ଥାଇ ଲଭିବୁ ପରମାନନ୍ଦ ।

ଜୀବ ଚଉରାଅଶୀ ଲକ୍ଷ ଯୋନି ଭ୍ରମଣ କରିଥିବା ଶାସ୍ତ୍ର କଥିତ ଜ୍ଞାନ- ମୁଁ ବ୍ରହ୍ମ ଏହି ସିଦ୍ଧାନ୍ତ । ଅହଂକାର= ମୁଁତ୍ୱ- ମୁଁ ଏ ସକଳର କର୍ତ୍ତା ମନରେ ଏହି ଭାବ । ଆତ୍ମ ନିବେଦନ= ଶରଣାମତି ବନ୍ଧୁର= କଠୋର, ଆବଡ଼ା ଖାବଡ଼ା । ମୋଦ= ଆମୋଦିତ । ମୋହନ ସରଣୀ= ବିମୁଗ୍ଧ କରୁଥିବା ପଥ ।। ପରମାନନ୍ଦ= ଶ୍ରେଷ୍ଠଆନନ୍ଦ ।



# କାଳ ଚେତନା

କାଳବଳେ ଜାତ ଏ ସାରା ଜଗତ ମହାକାଳ ବ୍ରହ୍ମରାଶି
କାଳରେ ଉଦୟ ସକଳ ପରାଣୀ କାଳ କବଳେ ବିନାଶି ।
ମାନବ ଜୀବନେ ସମୟ ଚେତନା କରଇ ତା'ରେ ମହାନ
କାଳ ପ୍ରବାହରେ ଋତୁ ଚକ୍ର ଧରା ପୃଷ୍ଠେ କରେ ଆଗମନ ।
ସମ୍ପଦ ସୁଯଶ କାଳରେ ପ୍ରାପତ କାଳାନ୍ତରେ ଅବସାନ
ଶଇଳ ସରିତ କାଳ ଦୃଢ଼କରେ ନାଶି କରଇ ବିଲୀନ ।
ପ୍ରାନ୍ତରେ ନଗର ଶ୍ମଶାନେ ମନ୍ଦିର କାଳ ଖେଳ କରଣୀର
ରମ୍ୟ ରାଜଧାନୀ କାଳ ଦନ୍ତଘାତେ ଜରାଜୀର୍ଣ୍ଣ କଳେବର ।
ଏ ନର ଜନମେ ମହତ ସାଧନ ବିଭୁ ଚରଣ କମଳ
ସମୟ ବିନାଶି ନାନା ରଂଗେ ମାତି କରିଥାନ୍ତି କେତେ ଆଳ ।
କରି ଦୃଢ଼ ଚିତ୍ତ ତେଜି ଚିନ୍ତାବିତ୍ତ ନିରତ ତାଙ୍କୁ ସୁମର
ନଶ୍ୱର ଭଂଗୁର ଦୂରେ ରହିଯିବ ଆପଣେ ଆପେ ଉଦ୍ଧାର ।

ଶଇଳ=ପର୍ବତ, ରମ୍ୟ=ସୁନ୍ଦର, ନଶ୍ୱର=ଅଳ୍ପକାଳ ସ୍ଥାୟୀ, ଭଙ୍ଗୁର=ବିନାଶଶୀଳ, ଆପଣେ ଆପେ ଉଦ୍ଧାର=ନିଜେ ନିଜକୁ ଉଦ୍ଧାର କରିବା, ଦେଖ- ଭଗବତ୍ ଗୀତା- ଷଷ୍ଠଅଧ୍ୟାୟ



# ଆପ୍ତକାମ

ଦିବସ ରଜନୀ କରି ଏକାକାର ଅର୍ଜନ ସଂଚୟେ ମତି
ଶ୍ରୀଗୁରୁ ଗୋବିନ୍ଦ ଚରଣ କମଳ ମାନସେ ବଳାଇ ପ୍ରୀତି ।

ସଂସାର ତାଡ଼ନା ତାପ ବିଡ଼ମ୍ବନା ନାଶନେ ଦେବ ମନ୍ଦିରେ
ଭୋଗର ପସରା ମାଗୁଣି ଅସରା ପୂର୍ଣ୍ଣ ହୋଇଯାଉ ବାରେ ।

କାମନା ଅନଳ ଦହୁଛି ଅନ୍ତର ଶାନ୍ତି କୃପା ବାରି ଦିଅ
ଆଶିଷ ଅମିୟ ଭାଗୀରଥୀ ପୂତ ନାଶିବ ସଂତାପ ଭୟ ।

ସମୟ ଅଭାବ କାରଣେ ବଂଦନା କରି ନପାରଇ ହେଳେ
ଆଳସ୍ୟ ପ୍ରମାଦେ ବିତିଯାଏ କାଳ ଜୀବନ କୁସଂଗ ମେଳେ ।

ଅପର ଚର୍ଚ୍ଚାରେ ମନେ ହୋଇ ମୋଦ ଅହଂକାର ଭାବ ମନେ
ବିଶୁଦ୍ଧ ସୁବର୍ଣ୍ଣ ନିଜକୁ ମଣଇ ଆନେ ପିତ୍ତଳ ତା' ଜ୍ଞାନେ ।

ମାନସେ ବୃଥାରେ ଅହଂକାରେ ବଶ ଭ୍ରମ ପଟଳ ନୟନ
ସରଳ ବିନୟ ସାଧନା ସୋପାନେ ଲଭିବୁ ତୁ ଦିବ୍ୟ ଜ୍ଞାନ ।

ଜୀବନରେ ସାର ସେ କୃପାପୟର ନିତି ପ୍ରତି କରି ଧ୍ୟାନ
ଏହି ଜନମରେ ବିଭୁ ଦରଶନ ହୋଇବୁ ତୁ ଆପ୍ତ କାମ ।

ଆପ୍ତକାମ- ମୋର ଆଉ କିଛି ଲୋଡ଼ା ନାହିଁ; ଏହି ଅବସ୍ଥା
ଅମିୟ= ଅମୃତ, ଆଳସ୍ୟ, ପ୍ରମାଦ= ଆଧ୍ୟାତ୍ମିକ ଯାତ୍ରା ପଥର ଶତ୍ରୁ ।



# ସର୍ବ ବିଭୁମୟ

କାଳନିରବଧି ଯାଉଅଛି ବହି ଅକଳଣା ପାରାବାର
ମାନବ ଜୀବନ ଲବେବା ନିମିଷେ ସିନ୍ଧୁ ସୁଖେ ଦୁର୍ନିବାର ।
ମହତ କରମ ଜଗତ କଲ୍ୟାଣ ଅର୍ଥେ ଯାହାର ଜୀବନ
ସୁଯଶ ମୁଖର ନୋହି କାଳବଶ ଜନମ ତା'ର ମହାନ ।

ଜଗତ ଜନତା ପାଇଁ ମନେ ବ୍ୟଥା କରଇ ଯେ ପ୍ରତିକାର
କାଳ କାଳ କୀର୍ତ୍ତି ଘୋଷଇ ଧରଣୀ ଅମର ଗାଥା ତାହାର ।
ସେବକ ସେ ନର କରୁଣା ଅନ୍ତର ଭେଦ ନାହିଁ ଆତ୍ମ ପର
ଆନର ସଂତାପ ମଣେ ନିଜ ତାପ ବିଗଳିତ ନେତ୍ର ଧାର ।

ବହୁ ଜନ ସୁଖ ବହୁ ଜନହିତ ଅର୍ଥେ ସମର୍ପି ଜୀବନ
ନିଷ୍କାମ ସେବାରେ ରତ ଯେଉଁ ଜନ ଜନମ ତା'ର ମହାନ ।
ପୁରାଣ ସଂହିତା ଗାଏ ଯା'ର ଗାଥା କୀରତି ତାଙ୍କ ଅମର
ପଦାଙ୍କ ତାହାଙ୍କ ଅନୁସରି ଗଲେ ଲଭିବୁ ଦିବ୍ୟ ପଯର ।

ଅଳୀକ ଭାବନା ନାଶ ହୃଦୟରୁ ବିଶ୍ୱ ଚେତନା ଉଦୟ
ବିଶ୍ୱ ଚରାଚର ଦୃଶ୍ୟ ଆତ୍ମଭାବ ସର୍ବଭାବେ ବିଭୁମୟ ।

ପାରାବାର= ସମୁଦ୍ର
ସର୍ବଭାବେ ବିଭୁମୟ=ସମସ୍ତ ସୃଷ୍ଟିରେ ବିଭୁ ଦର୍ଶନ କରିବା



# ମୁକ୍ତ ଜୀବ

ଆହାର ବିହାର ଭୋଗ ବାସନାରେ ନିଃଶେଷ ଜୀବନ କାଳ
ମାନବ ଜନମେ ପରମ ସାଧନା କାରଣେ ନପାଇ ବେଳ ।

ସଂସାର ସାଗର ଉର୍ମି ମାଳମାଳ ଏକ ପରେ ଆସେ ଆନ
ସଂପଦ ସମ୍ମାନ ବ୍ୟାଧି କବଳରେ ଶୋକାକୁଳ ଦିନୁ ଦିନ ।

ଶରୀର ଶକତି ତହୁଁ ଅଧୋଗତି କାମନାର କାହିଁ ଅନ୍ତ
ନବୀନ ରୂପରେ ଅଗ୍ରେ କାମ ଉଭା ଦିବା ରଜନୀ ଅଶାନ୍ତ ।

ଦୁହିତା କୁମର ସଖା ସହୋଦର ଜଂଜାଳ କେବେବା ମନେ
ବାତ ପିତ ଶ୍ଳେଷ୍ମା ରୋଗରେ କାରଣେ ତାପ ବଢ଼େ ଦିନୁ ଦିନେ ।

ଭୋଗ କାମନାରେ ଭ୍ରମିତ କିଏବା ନଲଭି ମନେ ସଂତାପ
ପାର୍ଥିବ ସଂପଦ ଅର୍ଜନ କାରଣେ ଆଚରେ କି ମହାପାପ ।

ଅଳୀକ ସଂପତ୍ତି ଜୀବନେ ବିପତ୍ତି ଅନ୍ତକାଳେ ରହିଯିବ
ଶାଶ୍ୱତ ଆନନ୍ଦ ଅନ୍ତରେ ରାଜିତ ତାଙ୍କ ଧ୍ୟାନୁ ମୁକ୍ତଜୀବ ।

କାମ=କାମନା, ଅଳୀକ=କ୍ଷଣିକ, ନାଶବାନ୍,
ଶାଶ୍ୱତଆନନ୍ଦ=ବ୍ରହ୍ମ ।



# ତାଙ୍କୁ ଦୃଢ଼େଧର

ଜୀବନ ବିଭବ ଦାରା ସୁତସୁତା ନାମ ଉପାଧି ସୁଯଶ
ତାଙ୍କରି କରୁଣା ପ୍ରସାଦକୁ ମଣେ ଆପଣାର ପଉରୁଷ ।

ଏ ଜନମେ ଯେତେ ଆତ୍ମୀୟ ସୋଦର ଆଗରୁ ଥିଲୁ କି ଜାଣି
ପରମ ପୁରୁଷ ପ୍ରଭୁ ବିଶ୍ୱବାସ ବିଧିରେ ଛନ୍ତି ନିର୍ମାଣି ।

ସଖା ସହୋଦର ପ୍ରୀତି ସମାଦର ସକଳ ତାଙ୍କରି ଦାନ
ଅନ୍ତର ଭିତରୁ ସମର୍ପଣ ଭାବେ କର ସେ ପଦ ବନ୍ଦନ ।

ଭୋଗ କାମନାରେ ଗତ ଦିବା ନିଶି ସ୍ୱପନେ ଦେଖଇ ତା'ରେ
ନଶ୍ୱର ଭଂଗୁର ଢାଳିଦେଇ ଚିତ୍ତ ନସ୍ମରିଲୁ ତାଙ୍କୁ ବାରେ ।

ଗତ ଜନମରେ ଅର୍ଜିଥିଲୁ ଯାହା ଏବେ ଯାଇଛି ପାଶୋର
ଯେ ଥିଲେ ସେ କାଳେ ମଇତ୍ର ବାନ୍ଧବ ସ୍ମରଣ ଅଛିକି ତୋ'ର ।

ପାର୍ଥିବ ସକଳ ତେଜି ଚାଲିଯିବୁ ହେଉ ଯେତେ ଆପଣାର
ଜନମେ ମରଣେ ଶାଶ୍ୱତ ପୁରୁଷ ଚିତ୍ତେ ତାଙ୍କୁ ଦୃଢ଼େ ଧର ।

ନାମ=ଲୌକୈଷଣା, ମୋତେ ସମସ୍ତେ ଜାଣନ୍ତୁ ଏହି ଭାବ ।



# ସ୍ୱୟଂମିତ୍ର

ଶରୀର ଯାହାକୁ ଯତନେ ରଖିଛୁ ବିନାଶ ଲଭିବ ଦିନେ
ସ୍ୱଭାବେ ମରଣ ପଥରେ ଗମନ୍ତେ ଜରାବ୍ୟାଧି ଅପଘନେ ।
ଆହାର ବିହାର ସଂଯମ ବିହୁନେ ଯୌବନେ ବ୍ୟାଧି ସଂଚାର
ବିଷମ .ବ୍ୟବସ୍ଥା ଶରୀର ମନରେ ଆଣଇ ବିପତ୍ତି ଘୋର ।
ନର ତନୁ ଲାଭ ସଂସାରରେ ସାର ପରମ ପିତା ବିଭୂତି
ଅଶେଷ ଜନମ ତପସ୍ୟା ସଂଯୋଗେ ପ୍ରାପତ ସେହି ସୁକୃତି ।
ଦେବତା ଗନ୍ଧର୍ବ ସକଳେ ଇଚ୍ଛନ୍ତି ଲଭିବାକୁ ନର ତନୁ
କର୍ମ ଭୂମି ତପ ସାଧନେ ଭାଜନ ନୋହିପାରେ ଏହା ବିନୁ ।
ତପସ୍ୟା ସାଧନ ମୁକତିର ପଥ ମାନବ ଜୀବନେ ସାର
ଇତର ପରାଣୀ ବାୟସ ବାନର ପୂରାନ୍ତି ନିଜ ଉଦର ।
ସଂତାନ ସଂଭବ ପଶୁ ଖଗବର ମାନବ ତାଙ୍କ ସମାନ
ଆପଣା ଉଦ୍ଧାର କାରଣେ ତା ତୁଲେ ନୁହଁନ୍ତି କେହି ଭାଜନ ।
ଶରୀର ସାଧନ ବିଭୁଦତ୍ତ ଦାନ ଅପୂର୍ବ ମାହେନ୍ଦ୍ର ବେଳା
ଆପେ ଶତ୍ରୁ ନୋହି ସ୍ୱୟଂ ମିତ୍ର ହୋଇ ମୁକତେ ନକର ହେଳା ।

ମାନବ ଜନ୍ମପ୍ରାପ୍ତି ବହୁଜନ୍ମର ପୁଣ୍ୟରୁ ମିଳିଥାଏ-
ଏହାକୁ ମାହେନ୍ଦ୍ରବେଳା କୁହାଯାଇଛି । ଅତ୍ୟନ୍ତ ଶୁଭ ସମୟ ।



# ସତ୍ୟବାଣୀ

ମଧୁର ବଚନେ ତୃପତ ହୁଅନ୍ତି ଦେଶେ କାଳେ ନରନାରୀ
କର୍କଶ ଦାରୁଣ ଭାଷଣ ଅପର ହୃଦୟ ଦିଏ ବିଦାରି ।
ଆନଠାରୁ ମଧୁ ବଚନ ଶ୍ରବଣେ ସରବେ କରନ୍ତି ଆଶା
ଅପରେ କ୍ରୋଧରେ ଶାଣିତ ଭାରତୀ ହୃଦରେ ଭରେ ହତାଶା ।
ମଧୁର ସୁସ୍ୱର ସଂଗୀତ ଶ୍ରବଣେ ସକଳ ହୃଦ ଦ୍ରବିତ
ଶତ୍ରୁ ମିତ୍ରଭାବ ଅଧିକୁ ଅଧିକ ବଚନରୁ ହୁଏ ଜାତ ।
ସତ୍ୟ ଭାଷୀ ଜନ ସଦା ସୁପ୍ରସନ୍ନ ଦେବ କରୁଣା ଲଭଇ
ତ୍ରିକାଳରେ ସତ୍ୟ ପ୍ରଭୁ ପରାତ୍‌ପର ବେଦପୁରାଣ ଭାଷଇ ।
ମାଧୁରୀମାମୟ ମୃଦୁ ସତ୍ୟଗିର ରତ୍ନ ତୁଲ୍ୟେ ବହୁ ଗୁଣ
ଜୀବନରେ ସେହୁ ଅମୂଲ୍ୟ ସଂପଦ ସଯତ୍ନେ କର ଧାରଣ ।
ସତ୍ୟ ପାଳନରେ ନୃପ ହରିଶ୍ଚନ୍ଦ୍ର ରାମଚନ୍ଦ୍ର ସୀତା ସତୀ
ଭାଷା ରାମାୟଣେ ଅମର ଅକ୍ଷରେ ଘୋଷଇ ତାଙ୍କ କୀରତି ।
ସତ୍ୟ ମିତ ଭାଷୀ ସରଳ ଅନ୍ତର ସକଳ ପ୍ରିୟ ଭାଜନ
ଦେବ ନର ପ୍ରିୟ ଦରିଦ୍ର ହେଲେ ହେଁ ରାଜନଠାରୁ ମହାନ ।
ସତ୍ୟ ବଚନରେ ବାଣୀ ସିଦ୍ଧି ହୁଏ ମହାତପ ସେ ବୋଲାଇ
ସେ ପଥେ ଗମିଲେ ମହତ ସାଧନା ଆତ୍ମଭାବ ଉଦେ ହୋଇ ।

ଆତ୍ମଭାବ=ନିଜେ ତୁ ହିଁ ବ୍ରହ୍ମ ଏହିଭାବ
ମିତ=ଅଳ୍ପ



# ପରମ ବନ୍ଧୁ

ସଂସାରେ ମଇତ୍ର ବାନ୍ଧବ ସର୍ବେ ସ୍ୱାର୍ଥରେ ବଶ
କାମନା ପୂରଣ ହୁଅନ୍ତେ ବନ୍ଧୁ ସମ୍ବନ୍ଧ ନାଶ ।
ବିବିଧ ବିଚିତ୍ର ଅଦୃଶ୍ୟ ଜାଲ ସ୍ୱାର୍ଥ କୁହେଳି
ମୋହରେ ଆଚ୍ଛନ୍ନ ହୁଅଇ ନେତ୍ର ପଥ ଆଗୁଳି ।
ସୁଯଶ ସଂପଦ କାମନା ଆଶେ ବସଇ ଭାବ
ଲବେ ତହୁଁ ଊଣା ହୋଇଲେ ତହିଁ ଘଟେ ଅଭାବ ।
ବସ୍ତୁ ଅବସ୍ତୁରେ ବାସନା ରସେ ବିବିଧ ରସେ
ପାନ ଚୂନ ହୀନ ହୁଅନ୍ତେ ମିତ୍ର ପାଶରୁ ଖସେ ।
ସକଳ ଜୀବର ଜୀବନ ଜନ୍ମାନ୍ତର ସୁହୃଦ
ପରମ କାରଣ କରୁଣା ଘନ କହି ବିବୁଧ ।
ଜୀବରେ ମାନବ ଶରୀର ଦାନେ ଅମିତ ଶକ୍ତି
ପରମ ମଇତ୍ର ଜ୍ଞାନରେ ହେଲେ ହୋଇବୁ ମୁକ୍ତି ।
ଲୋଡ଼ା ନାହିଁ ବିତ୍ତ ବିଭବ ଭବ ଯଶ ଗୌରବ
ଜ୍ଞାନ ମାର୍ଗେ ଚଳି ଲଭିବୁ ଲଂଘି ଯିବୁ ରୌରବ ।
ସକଳ ଅନ୍ତରେ ବିରାଜିଛନ୍ତି ଜଗତ ବନ୍ଧୁ
ସୁଦୃଢ଼େ ଧରି ତୁ ପୟର ତରି ସଂସାର ସିନ୍ଧୁ ।

ସ୍ୱାର୍ଥ କୁହେଳି=(କୁହୁଡ଼ି) ଅସ୍ପଷ୍ଟ ବିବିଧ ସ୍ୱାର୍ଥ
କରୁଣାଘନ=ବ୍ରହ୍ମ, ବିବୁଧ=ଜ୍ଞାନୀବ୍ୟକ୍ତି
ଆଗୁଳି=ଅବରୋଧ, ରୌରବ=ଏକପ୍ରକାର ନରକ



# ବିଶ୍ୱକଲ୍ୟାଣ ଭାବନା

ପ୍ରତିଧ୍ୱନି ଯାହା ଦୂରେ ଶୁଣାଯାଏ ଧ୍ୱନି ଅନୁସରି ଥାଏ
ଅପର ଜନକୁ ଯେବା ଆଚରଣ ନିଜକୁ ପ୍ରାପତ ହୁଏ ।
ସୁଖ ଆଶା ମନେ ପ୍ରାପତ କାରଣେ ଅପରେ ସୁଖ ଆଚର
ମାନ ଆଶା ଥିଲେ ଅପରେ ସମ୍ମାନ ଦେଇ ଆଲୋକିତ କର ।
ଅପର କଲ୍ୟାଣ କାରଣେ ଅବଶ୍ୟ ପ୍ରାପତ ହୁଅଇ ହିତ
ହିଂସା ପରାୟଣ ହିଂସା ଅନଳରେ ହୋଇଥାନ୍ତି ଦଗ୍ଧିଭୂତ ।
ସାଧୁ ଭାବ ଧରି ସଂସାରେ ଚଳନ୍ତେ ପାପ ନାଶନ କରନ୍ତି
ପୁଣ୍ୟ ରାଶି ଉଦେ ହୋଇ ପୂର୍ବ ଭାଗ୍ୟେ ପାପ କାଳିମା ହରନ୍ତି ।
ହିଂସା ସାଧୁତାକୁ ତୁଳିବା କାହିଁକି ପିୟୂଷ ବିଷ ଯେସନ
ସାଧୁ ସ୍ୱଭାବରେ ଜଗତେ ପ୍ରସାରେ କରୁଣା ମମତା ଦାନ ।
ହିଂସକ ମାନବ ବୈର ନିର୍ଦ୍ଦୟତା ଆତ୍ମା ପର ବିତରଣ
ଜଗତେ ସନ୍ତାପ ବର୍ଦ୍ଧନ କାରଣେ ବିଷ ବୀଜ ସଂଚରଣ ।
ସଂସାରେ ମହତ କଲ୍ୟାଣ ଭାବନା କରଣୀ ଫଳ ମଧୁର
ବିଶ୍ୱ ହିତେ ମତି ହୋଇ ଊର୍ଦ୍ଧ୍ୱଗତି ସପ୍ତ ପୁରୁଷ ଉଦ୍ଧାର ।

ଆତ୍ମ-ପର= ମୁଁ ଏବଂ ଅନ୍ୟ, ମୁଁ ଭଲ ଅନ୍ୟ ସମସ୍ତେ ଖରାପ ଏହିଭାବ ।
ସତ ପୁରୁଷ ନିଜକୁ ଉଦ୍ଧାର କରିବା ସହିତ ନିଜ ବଂଶର ଉଦ୍ଧାର କରିଥାଏ



# କୃପାଦାନୀ

ଯେବା ଯେଉଁ ଭାବେ ଭଜନ କରଇ ମୁହିଁ ତା'ରେ ଅନୁରୂପ
ମିଳନେ ପରାଣ ବ୍ୟାକୁଳ ହୁଅନ୍ତେ ମୁଁ ଭଜେ ତା'ରେ ସତତ ।
ଆପଣାର ପ୍ରିୟ ବସ୍ତୁ ନିବେଦିଲେ ତାଙ୍କ ପ୍ରିୟର ପ୍ରାପତି
ଅତୁଲ୍ୟ ସଂପଦ କରିଥାଏ ମୋଦ ହରଇ ସର୍ବ ବିପତ୍ତି ।
ସତ୍ୟ ସଂକଳ୍ପ ସେ ବିଭୁ ଲୀଳାମୟ କିଏ ବା କରେ କଳଣା
ତତକ୍ଷଣ ତୁମ ସହ ମିଳନରେ ଦିବ୍ୟ କୃପା କା'ରେ ଜଣା ।
କ୍ଷୁଦ୍ର କଳୁଷିତ ସଂକୋଚ ମାନସ ପାପ ତାପ ମନ୍ଦୀଭୂତ
ମହାନ ବିଶାଳ ପରମ ପବିତ୍ର ମନେକରି ବିଭୂଷିତ ।
ତାଙ୍କ କରୁଣାରେ ମହତ ହୋଇବୁ ଜୀବନରେ କୃତକୃତ୍ୟ
ପଞ୍ଚଭୂତମୟ କଳୁଷ ଗାତ୍ରରେ ଲଭିବୁ ତୁହି ମୁକତ ।
ଅନିତ୍ୟ ଭଙ୍ଗୁର ଯାହା ଅରପିବୁ ପ୍ରତିଦାନେ ଦିବ୍ୟଧନ
ସଂପୂର୍ଣ୍ଣ ଆନନ୍ଦ ସର୍ବୈଶ୍ୱର୍ଯ୍ୟମୟ ଶାଶ୍ୱତେ ହେବୁ ମହାନ ।
କରୁଣା ମୂରତି ସେ ବିଶ୍ୱ ବିଭୂତି ହୃଦେ ତାଙ୍କୁ ଦୃଢ଼େଧର
କୃପା ବିନା ଆନ ଦେଇକି ପାରନ୍ତି ସେ ତ କୃପା ଅକୂପାର ॥

ଯେ ଯଥାମାଂ ପ୍ରପଦ୍ୟନ୍ତେ ତାଂତଥୈବ ଭଜାମ୍ୟହମ୍- ଭଗବତ୍‌ଗୀତା
ମନ୍ଦିଭୂତ= ଧୀରବେଗ, ଡେରିରେ ବୁଝିବା, ଅକୂପାର= ସମୁଦ୍ର ।



# ସେବା

ଚାରିପାରୁଶରେ ଫେଡ଼ି ନେତ୍ର ଦେଖ ଅସହାୟ ନର ନାରୀ
ଅସନ ବସନ ବ୍ୟାଧି କବଳିତ ରୋଦନେ ଗଗନ ପୂରି ।
ଅସହାୟ ଜନେ ସହାୟ କାରଣେ ହୃଦ ଶୀତଳତା ହୋଇ
ସେବା କାରୀଜନ ତୃପତି ଲଭଇ ଅପାର ଆନନ୍ଦ ପାଇ ।
ଆରତ ଜନରେ ସହାୟ ହୋଇଲେ ସୁଲଭ ବିଭୁ କରୁଣା
ବିଚାର ସଂପଦ ସାମର୍ଥ୍ୟ ପରାର୍ଥେ ସେବାରେ ଦିବ୍ୟ ଚେତନା ।
ସେବାରେ ମାନସ ଶୁଦ୍ଧତା ଲଭଇ ଅହଂକାର ନାଶ ଯାଏ
ଅନ୍ତର କଳୁଷ ବିନାଶ କାରଣେ ମହାତପ ସେ ବୋଲାଏ ।
ପୂଜା ଆରତିରେ ଯାହା ମିଳେ ତା'ରେ ସେବାରେ ତହୁଁ ବିଶେଷ
କୃପଣ କୁଣ୍ଠିତ ବଦାନ୍ୟ ବୋଲାଏ ମହାପ୍ରାଣୀ ଯହିଁ ତୋଷ ।
ସଂଚିତ ବିତ୍ତର ବିନିଯୋଗ ସିନା ଆନ କଷଣ ହରଣ
ପଦେପଦେ ତା'ରେ ସହାୟ ହୁଅନ୍ତି ଭାବଗ୍ରାହୀ ନାରାୟଣ ।
ଅପରେ ସହାୟ କାରଣେ ତା' ହୃଦେ ଦିବ୍ୟ ଭାବନା ସଂଚାର
ବିମଳ ଅନ୍ତରେ ବିରାଜନ୍ତି ସଦା ମୋଦରେ ଜଗଦାଧାର ।
ଆପଣେ ମହତ ପରେ ଲଭିହିତ ବେନିଜନ ଆନନ୍ଦିତ
ଇହପରକାଳ ସରଣୀ ମଞ୍ଜୁଳେ ସୁମନରେ ସୁରଭିତ ॥



# ଓଁ କାର

ପରମ ଜ୍ଞାନର ଆକର ଋଷିଏ ବେଦ କହିଥାନ୍ତି ଯାରେ
ଅ କାର ଉ କାର ମ କାର ଓଁ କାର ହୁଅନ୍ତେ ବୀଜ ପ୍ରକାରେ ।
ଶବ୍ଦ ବ୍ରହ୍ମରୂପ ଓଁ କାରକୁ କହି ଯହିଁ ବେଦବାଣୀ କ୍ଷରୀ
ଅ କାର ଅନଳ ସ୍ୱରୂପ ବୋଲାଇ ସର୍ବ କାମ ପୂର୍ଣ୍ଣକାରୀ ।
ଉ କାର ତେଜର କ୍ରିୟାଶକ୍ତି କହି ଅନ୍ନ ପରିପାକ ହେତୁ
ବହ୍ନି ପ୍ରଜ୍ଞା ବେନି ସଂଯୋଗ ସଂଚାଳି ମଙ୍ଗଳ କାରକ ସେତୁ ।
ଉପାସନାକାରୀ ବହୁ ମିତ୍ର ଭୋଗୀ ଅଜ୍ଞାନ ନାଶ କରଇ
ମ କାର ଆରାଧ ବୁଧ ବୃନ୍ଦ ଲଭି ବିଭବର ଅଧିକାରୀ ।
ଚତୁର୍ଥ ମାତ୍ରା ଯେ ତୁରୀୟ ପ୍ରମାଣ ବ୍ୟୋମ ଅନ୍ତରୀକ୍ଷ ଯାଏ
ଓଁ କାର ଜାଣନ୍ତେ ଆତ୍ମାକୁ ଜାଣନ୍ତି ଶ୍ରୁତି ସରଣୀ ସୂଚାଏ ।
ଅ କାର ଅବ୍ୟୟ ପୁରୁଷକୁ କହି ଉ ଅକ୍ଷର ପୁରୁଷ
କ୍ଷର ସ୍ୱରୂପ ଯେ ମ କାରକୁ କହି ଅର୍ଦ୍ଧ ମାତ୍ରା ପୂର୍ଣ୍ଣ ଈଶ ॥



# ସୂକ୍ଷ୍ମମାର୍ଗ

ନିରାକାର ମହାଶୂନ୍ୟ କରେ କେ କଳଣା
ଯୋଗୀଋଷି ମହାତପୀ ତହିଁ ପଥ ବଣା ।
ମାଳମାଳ ବ୍ରହ୍ମାଣ୍ଡ ଯା'ଠାରେ ଛନ୍ତି ରାଜି
ସେ ପୁରୁଷ ଆପେ ବିଶ୍ୱ ବ୍ରହ୍ମାଣ୍ଡ ସରଜି ।
ସକଳ ଘଟରେ ଥାଇ ଜୀବନ ସଂଚାର
ପଞ୍ଚଭୂତେ ସୂକ୍ଷ୍ମେ ରାଜେ ସୃଜନ ବେଭାର ।
ପଞ୍ଚଇନ୍ଦ୍ରି ବୋଧ ସିନା ହେତୁ ପଞ୍ଚଭୂତେ
ବ୍ରହ୍ମବୋଧ ଇନ୍ଦ୍ରିୟରେ ନହୁଏ କିଞ୍ଚିତେ ।
ବିଷୟ ବୋଧ କରନ୍ତେ ଇନ୍ଦ୍ରିୟ ସହାୟ
ତୁରୀୟ ବୋଧ ସହାୟ ପୂର୍ଣ୍ଣ ଦୟାମୟ ।
ବାଣୀ ନପାରେ ପ୍ରକାଶି ସେହି ଅନୁଭବ
ଏକ ସତ୍ୟ ବହୁଭାବେ ବଦନ୍ତି ସାଧବ ।
ସୂକ୍ଷ୍ମେ ଯତ୍ନେ ଗ୍ରଥିତ ଏ ଦୃଶ୍ୟମାନ ଧରା
ମନସୂତ୍ରେ ବଶୀଭୂତ ଶରୀର ପସରା ।
ରୂପରଂଗେ କିବା କାର୍ଯ୍ୟ ତହିଁ ସୂକ୍ଷ୍ମ ବୁଦ୍ଧି
ସୂକ୍ଷ୍ମରୁ ସୂକ୍ଷ୍ମ କ୍ରମରେ ରାଜମାର୍ଗ ସିଦ୍ଧି ।
ସ୍ଥୁଳ ତେଜି ସୂକ୍ଷ୍ମ ମାର୍ଗେ ବିହାରି ବିଚାର
ସାଧନା ସମାଧି ବିଧି ମାନବରେ ସାର ।
ଗୁରୁଦତ୍ତ ଜ୍ଞାନ ଧନେ ଧନୀ ବୋଲାଇବୁ
ପାର୍ଥିବ ସଂପଦ ଲୋଭ ହେଲେ ପାଶୋରିବୁ ॥



# ସେ ମହାନ

ଅର୍ଜିତ ଧନରେ ଲୋଭୀତ ମାନସେ ସଂଚୟରେ ବଳେ ମତି
ଅପରେ ଭୋଗୀବ କେବା ଘେନିଯିବ ଶଙ୍କାରେ ଉପୁଜେ ଭୀତି ।
ସଂପଦ ବର୍ଦ୍ଧନେ କୃପଣପଣରେ ଆନେ କାହିଁ ବା ସେ ଦେବ
ସଂକଳ ସଂପତ୍ତି ସପତ ପୁରୁଷ ଅର୍ଥେ ସଂଚି ରଖିଯିବ ।
ପ୍ରବଳ ପ୍ରତାପୀ ଲୋଭ ମହାବଳୀ ଦୃଢ଼େ ହୃଦରେ ରାଜଇ
ବିତ୍ତ ଚିତ୍ତ ଶ୍ରମ ଦାନର କାରଣେ ଆଗୁସାର କେବେ ନୋହି ।
ସଂପଦରେ ଦାନୀ ହୋଇଥାଏ ନର ଆନ ସନ୍ତାପ ହରଣ
ବାସଦେଇ ଆନେ ମହତ ବୋଲାଇ ରଖେ ଅପର ସମ୍ମାନ ।
ଦାତା ସେ ହୁଅଇ ଧନର ପ୍ରଭାବେ ଅନ୍ନଦାନ କରି ଭବେ
ଦାନ ଭୋଗ ବିନା ବ୍ୟାକୁଳ ଅନ୍ତରେ ସୁଖ ନ ଲଭଇ ଲବେ ।
ପାଶେ ଧନଥିଲେ ଧର୍ମ କାର୍ଯ୍ୟେ ମତି ଧାର୍ମିକ ହୁଏ ସେ ଜନ
ସଞ୍ଚିତ ସଂପଦ ବିନାଶନ ଭୟେ ଆକୁଳ ସଦା ପରାଣ ।
ଦେଶେ କାଳେ ଧନ ଅକାତରେ ଦେଇ ମହତ ସେହୁ ବୋଲାଏ
ସମାଜ କଲ୍ୟାଣ ବହୁଜନହିତ ଭାବନା ଯା' ହୃଦେ ଥାଏ ।
ସତ ମାର୍ଗେ ଯେହୁ ଅର୍ଜି ଧନରାଶି ସତ୍‌ପାତ୍ରେ କରଇ ଦାନ
ଲୋକରେ ପ୍ରଶଂସା ନକଲେ ହେଁ ଆଶା ଯୁଗେ ଯୁଗେ ସେ ମହାନ ॥



# ସମଦୃଷ୍ଟି

ବିଶ୍ୱେ ନରନାରୀ ପଶୁ ପକ୍ଷୀ ମୀନ ସମାନ ନୁହଁନ୍ତି ଆନେ
ଗୌର କୃଷ୍ଣକାୟ ପୃଥୁଳ କେହିବା ସାନୁ ପ୍ରାୟ ଦରଶନେ ।
ଆହାର ବିହାର ବସନ ଭୂଷଣ କାହୁଁ ହୋଇବ ସମାନ
ନିବାସ ବଚନ ଦେଶେ ଅବା କାଳେ ହୋଇଥାଇ ଆନ ଆନ ।
ପଶୁ ବିହଙ୍ଗମ ବିବିଧ ବରନ ବିଚିତ୍ର ତାଙ୍କ ବେଭାର
ସାଗର ତଟିନୀ ପୁଳିନ ବିହାରୀ ଶଇଳେ ଆନ ପ୍ରକାର ।
ସକଳ ବିଚିତ୍ର ଦୃଶ୍ୟ ନେତ୍ର ପଥେ ନାନା ରଙ୍ଗେ ରୂପ ଶୋଭା
ସରବ ଅନ୍ତରେ ସାକ୍ଷୀ ସ୍ୱରୂପରେ ବିରାଜିତ ଦିବ୍ୟ ଆଭା ।
ଦ୍ରଷ୍ଟା ଭାବେ ରହି ଶୁଭା-ଶୁଭ କର୍ମ ଦେଖୁଥାଇ ନିରନ୍ତରେ
କର୍ତ୍ତା ଭାବ ରଖି କର୍ମର କାରଣେ ଫଳ ସମୀପେ ବା ଦୂରେ ।
ପରାଣୀ ସକଳେ ଆତ୍ମଭାବ ରଖି ସମଦୃଷ୍ଟି ସମଭାବ
ଦର୍ଶନ ସାଧନେ ସୋପାନ ଆରୋହୀ ସ୍ୱୟଂ ତୋ ସ୍ଥିତି ମାଧବ ॥

(ଯୋମାଂ ପଶ୍ୟତି ସର୍ବତ୍ର ସର୍ବଂ ଚ ମୟିପଶ୍ୟତି- (ଗୀତା)ର
ଭାବ ଆଧାରରେ ରଚିତ)
ସାନୁ=ଶୈଳ



# ବିଶ୍ୱ ବିମୋହନ

ବିତ୍ତ ଅରଜନେ ଚିତ୍ତ ନୋହେ ତୃପ୍ତି ଲୋଭ ଗ୍ରସିତ ଅନ୍ତରେ
ଅର୍ଥକାରୀ ବିଦ୍ୟା ଅର୍ଜନ କାରଣେ ସମାଜେ ଜ୍ଞାନୀ ବିଚାରେ ।
ବାସ ସୁରମ୍ୟରେ ପରିଧାନ ଯତ୍ନେ ଅନ୍ତର ଶୁଦ୍ଧି ନୁହଁଇ
ତ୍ରିତଳ ପ୍ରାସାଦେ ନିବାସ କରନ୍ତେ ମହତ ବୋଲା ନ ଯାଇ ।
ବହୁ ମୂଲ୍ୟ ଯାନ କରି ଆରୋହଣ ଅନ୍ତର କାଳିମାମୟ
ଲୋଭ ଈର୍ଷାନଳେ ଜ୍ୱଳନ ଧୂମରେ ଅନ୍ତରେ ସନ୍ତାପ ଭୟ ।
ସଦାଚାର ମାର୍ଗ ପଢ଼ି ଶୁଣିଜାଣି କରଣୀ ଆନ ପ୍ରକାର
ଜାଗ୍ରତେ ସ୍ୱପନ ଦର୍ଶନେ ଅଭ୍ୟାସୀ ବୋଲାନ୍ତି ଜ୍ଞାନ ଆକର ।
ଅପର ମଇତ୍ର ବନ୍ଧୁଜନେ ଭ୍ରମେ ବିଶ୍ୱାସେ ଦେଇ ଜହର
ଅଙ୍କଶାୟୀ ପ୍ରାଣୀ ନିଧନ କରନ୍ତେ ହୁଏ କି ପୁରୁଷାକାର ।
ଅନ୍ତରରେ ସାକ୍ଷୀ ସ୍ୱରୂପେ ଅଛନ୍ତି ସକଳ ଅନ୍ତରବାସୀ
ଭାବନା ଭାଷଣ କରଣୀ ସାଧନେ ସ୍ୱୟଂ ସାଧୁ ଅବା ଦୋଷୀ ।
ଆନେ ଶ୍ରଦ୍ଧାଭାବ ଆଣିଲେ ଚିତ୍ତରେ ଅହଂକାର ଯାଇ ନାଶ
ସେବା ଭାବ ହୃଦେ ସଂଚାର କାରଣେ ଅନ୍ତର ଶୁଦ୍ଧ ଅବଶ୍ୟ ।
ଶୋଧିତ ହୃଦୟ ବିମଳ ପ୍ରସନ୍ନ ହୁଅନ୍ତି ଜଗଦାଧାର
ସାଧୁତା ମୃଦୁତା ଋଜୁ ପ୍ରସନ୍ନତା ହୃଦେ ରାଜେ ନିରନ୍ତର ।
ଦିବ୍ୟ ଭାବେ ହୃଦେ ରାଜନ୍ତେ ବିମ୍ବିତ ବିଶ୍ୱ ବିମୋହନ ରୂପ
ଅପୂର୍ବ ମୋହନ ଅନ୍ତରେ ପୂରିତ ବୋଧ ତୁ ବ୍ରହ୍ମ ସ୍ୱରୂପ ।

ଆକର=ସାଗର, ବାସ=ବସ୍ତ୍ର



# ବୈତରଣୀ ପାରି

ହୃଦୟରେ ଆଶା ସଂଚରି ଯାଆନ୍ତେ ନବୀନ ସ୍ୱପ୍ନ ଦର୍ଶନ
ସ୍ୱପନେ ବାସନା ବଢ଼େ ଦିନୁଦିନ ହେବ ଜୀବନେ ମହାନ ।
ଆଶାର ସଂଚାର ନାନା ଦିଗେ ଗତି ମାନସ କରେ ଆକୁଳ
ପ୍ରବାହ ଯେ ଦିଗେ ବାତ ଗତି ପ୍ରାୟ ନମିଳଇ ଥଳକୂଳ ।
କାମନା ଆଶାରେ ପୂରଣ କାରଣେ କରି ବହୁ ବିଧ ଫନ୍ଦି
ପୂରଣ କାରଣେ ଅନ୍ତର ଅସ୍ଥିର ମରୁଥାଏ ହୋଇ ଧନ୍ଦି ।
ଲୋଭର ବାସନା ବଢ଼େ ଦିନୁ ଦିନ ଉତ୍ତର ବୟସ କାଳେ
ଅଧିକୁ ଅଧିକ ସଂଗ୍ରହ ସଂଚୟେ ଶିଖା ତୋଳି ହୃଦେ ଜଳେ ।
ଅଶାନ୍ତ ମାନସେ ଗତ ନିଶିଦିନ ରୁଚି ନଥାଇ ଭୋଜନେ
କୋମଳ ସୁରମ୍ୟ ଶଯ୍ୟାରେ ଶୟନ ନିଦ୍ରା ନହୁଏ ଲୋଚନେ ।
ଆଶା ବୈତରଣୀ ପୁରାଣ ବିଦିତ ରହସ୍ୟ ମଧ୍ୟେ ଚିତିତ୍ର
ତରଙ୍ଗିଣୀ ପାରି ହୋଇବା କାରଣେ ଜଗତେ କେ ସମରଥ ।
ପାର୍ଥିବ ସଂପଦ ମାନ ସନମାନ ବର୍ଦ୍ଧନେ କାମନା ଜ୍ୱାଳା
ଶାଶ୍ୱତ ସଂପତ୍ତି ଅର୍ଜନେ ଉପାୟ ତ୍ରିଦିବ ସୁମନ ମାଳା ।
ତରଣୀ ସୁରମ୍ୟ ଗୁରୁଙ୍କ ପୟର ବସ ସେହି ନାବପରେ
ଦୁସ୍ତର ଅଗମ୍ୟ ବୈତରଣୀ ପାରି ଈଶଙ୍କୁ ଧ୍ୟାୟୀ ଚିତ୍ତରେ ।



# ଶକ୍ତିରୂପା

କାମିନୀ କାମନା ମାନସରେ ରସି ଥିବା ଯାଏ ଶେଷ ଶ୍ୱାସ
ଅପର ରମଣୀ ଦର୍ଶନେ ପଡ଼ନ୍ତେ ଜଳେ ଅନ୍ତରେ ହୁତାଶ ।
ଆତ୍ମୀୟ ସ୍ୱଜନ ବନ୍ଧୁ ପରିଜନେ ଅନ୍ତରେ ବିକାର ଭାବ
ଭୋଗର ବାସନା ସନ୍ତାପ ଅନ୍ତରେ ଅନଳ କାହୁଁ ଲିଭିବ ।
ନାରୀଠାରେ ଦିବ୍ୟଭାବ ଦରଶନେ ସ୍ୱଭାବେ ନବଳେ ମତି
ସ୍ନେହମୟୀ ଦୟା ମନ୍ଦାକିନୀ ଧାରା ସହନରେ ବସୁମତି ।
ଆଦିଶକ୍ତି ରୂପା ହୋଇ ଅବିର୍ଭୂତା ଅମୂର୍ତ୍ତ ମୂରତି ଉଭା
ସ୍ୱଭାବେ ତ୍ରିଦିବ ମହତି ବିଭୂତି ଶୋଭା ପୁଂଜମୟୀ ଆଭା ।
ମାନମୟୀ ଦେବୀ ପାଳନେ ପୋଷଣେ ଆନ କେ ହୋଇବ ସରି
ଭାବ ମାଧୁରୀମା ଅତୁଳ ମହିମା ସମହେବ ବସୁନ୍ଧରୀ ।
ଧର୍ମ ଅର୍ଥ କାମେ ପ୍ରେରଣା ଦାୟିନୀ ସିଦ୍ଧି ସୋପାନ ସରଣୀ
ତା' ଚରଣେ ନତି ହରଇ ବିପତ୍ତି ସ୍ୱୟଂ ଦିବ୍ୟା ଦିବ୍ୟ ବେନି ।
ମାୟା ମୂର୍ତ୍ତି ମତୀ ଅମିତ ଶକତି କେ କରିପାରେ ବର୍ଣ୍ଣନ
ଚତୁର୍ମୁଖ ଧାତା ସୃଜନ କରତା କି ଅବା ପଞ୍ଚ ଆନନ ।
ଦେବୀ ଶକ୍ତିରୂପା ପ୍ରଜ୍ଞା ମେଧା ଯୁତା ସରବ ଗୁଣ ଆକର
ଜୀବନେ ମରଣେ ମହାଦ୍ୟୁତିମୟୀ ମଥା ଲୁଲୁ ତା' ପୟର ।

ରସି= ମଜ୍ଜିଯିବା, ହୁତାଶ= ଅନଳ, ଦିବ୍ୟାଦିବ୍ୟ= ପାର୍ଥିବ ସ୍ୱର୍ଗୀୟ
ଲୁଲୁ= ଲୋଟିବା, ଦ୍ୟୁତି= ପ୍ରଭା ।



# ସାଗର ପାରି

ଆଲୋକ ଅନ୍ଧାର ଦିବସ ରଜନୀ
କରନ୍ତି ନର୍ତ୍ତନ ଯାହା ଆଜ୍ଞା ଘେନି ।
ଆନନ୍ଦ ବିଷାଦ ପ୍ରସାଦ ପ୍ରମାଦ
ମାନସେ ସୃଜଇ ବିଷମୟ ଦ୍ୱନ୍ଦ୍ୱ ।
ଶଇଳ ସାଗର ସରିତ କାନ୍ତାର
ପ୍ରକୃତି ସୁଷମା ମହତ ଅପାର ।
ଭୀମକାନ୍ତ ରୂପ ଦର୍ଶନେ ମାନସେ
ହୃଦୟ ପୂରଇ ବିସ୍ମୟେ ହରଷେ ।
ଅନ୍ତରେ ଅସ୍ଥିର କାମନା ତରଙ୍ଗ
ନିମିଷେ ଆନନ୍ଦ ବିଷାଦିତ ରଙ୍ଗ ।
ସୁଦର୍ଶନ ବପୁ ସମ୍ପଦ ଆସନ
ହେଲେ ହେଁ ସନ୍ତାପ ସାଗରେ ମଗନ ।
ମାନସେ ସନ୍ତୋଷ ହୁଅଇ ବିନାଶ
ଦେହେ ରାଜବେଶ ଅନ୍ତରେ ହତାଶ ।
ଆକୁଳ ଅନ୍ତରେ ଯାଏ ନିଶିଦିନ
ସମ୍ପଦ ସଂଭାରେ ଜୀବନରେ ଦୀନ ।
କାମନା ଅନଳେ ଜଳୁଛି ଅନ୍ତର
ମନ ମରୁସ୍ଥଳ ଊଷର ପ୍ରାନ୍ତର ।
ପରମ କରୁଣା ଦିବ୍ୟ ମନ୍ଦାକିନୀ
ଜୀବନେ ସନ୍ତାପ ହରଣ କାରିଣୀ ।
ଗୁରୁ ଶାସ୍ତ୍ର ବାକ୍ୟେ ସାଧନାରେ ଧର
ହେଲେ ତରିଯିବୁ ଭବ ପାରାବାର ।

ଭୀମକାନ୍ତ= ଭୀଷଣ- ସୁନ୍ଦର



# ମହତ ସେବା

ରଂଗାଳୟେ ଯେବା ରଚୁଛି ନର୍ତ୍ତନ ଦର୍ଶକ ମୋଦ କାରଣେ
ଜୀବନେ ବିଷାଦ ସନ୍ତାପ ମାନସେ କିଏ ଅବା ତାହା ଜାଣେ ।
ସଂସାରେ ମାନବ ନଟନଟୀ ପ୍ରାୟ ରୁଚି ବେଶ ଅଭିନୟ
ଅନ୍ତର ବେଦନା ଆନେ ନ ଜାଣନ୍ତୁ ଗୋପନ ମନ ଅଥୟ ।
ସାଧୁ ବେଶଧରି ଅଙ୍ଗେ ବହିଛାପ ଅନ୍ତରେ ବହି କଳୁଷ
ଉପାର୍ଜନେ ବିତ୍ତ ପରେ ପ୍ରତାରଣା ମାନସେ ନୋହି ସନ୍ତୋଷ ।
ବଣିଜ ପସରା ମେଲିଛି ବ୍ୟାପାରୀ ଗ୍ରାହକ ପକାଇ ଭ୍ରମେ
ଦରବ କିଣନ୍ତେ କରି ଅର୍ଥଶ୍ରାଦ୍ଧ ଧନ୍ଦି ହୋଇ ପଥ ଶ୍ରମେ ।
କ୍ଷମତା ମଦରେ ଅପରେ ମାରଣ ବିତ୍ତ ଅର୍ଜନ କାରଣ
ଉଦାର ଭାବନା ନଥିଲେ ଅନ୍ତରେ ଉର୍ପାଜନ ଅକାରଣ ।
ସଞ୍ଚିତ ବିତ୍ତରେ ଅପର କଲ୍ୟାଣ ଆନ ସଂତାପ ନାଶନ
ମହତ ଭାବନା ଅନ୍ତର ସେବାରେ ମାନବ ସ୍ୱୟଂ ମହାନ ।

ମୋଦ=ଆନନ୍ଦ, ରୁଚି=ସୁନ୍ଦର ।



# ପଥରେ ଦୃଢ଼ ବିଶ୍ୱାସ

ଶିଶୁ କାଳ ଗତ ହସ୍ତେ କ୍ରୀଡ଼ନକ ବିଦ୍ୟାଳୟେ ବିଦ୍ୟାଲାଭ
ଯୌବନ ଉପାୟ ବିତ୍ତ ଅର୍ଜନରେ ସଂସାରେ ଭାବ ଅଭାବ ।
କର୍ମ ଜଂଜାଳରେ ସଦାଚାର ଜ୍ଞାନ ପ୍ରତି ନରହିଲା ହେତୁ
ବ୍ୟାଧି କଳେବର ଗ୍ରାସନ୍ତେ କେବେବା ସଂଗେ ଯିବ ଘେନି ମୃତ୍ୟୁ ।
ବାର୍ଦ୍ଧକ୍ୟ ଶକତି ବିନାଶ କାରିଣୀ ଘୋର ସଂତାପ ମାନସେ
ଆତ୍ମୀୟ ସ୍ୱଜନ ଅନାଦର ଭାବ ଆକୁଳ ସାଗରେ ଭାଷେ ।
ଜୀବନେ ଅର୍ଜନ କରିଅଛୁ ଯାହା ପ୍ରାସାଦ ସଂପଦ ଯାନ
ମରଣ ନୋହୁଣୁ ଆତ୍ମୀୟ ସ୍ୱଜନ ଆଚରଣ ହୀନମାନ ।
ଆହାର ବିହାର ସଂତାନ ସଂଭବ ପାଳନ ମହାଜଞ୍ଜାଳ
ଲୋଭୀତ ମୋହିତ କାମନାରେ ଜଳି ବିତିଲା ଜୀବନ କାଳ ।
ସକଳ ସଂପଦ ଅର୍ଜିଅଛୁ ଯାହା ନାଶ ହେବ କ୍ଷଣକରେ
ବିବେକ ଉଦୟ କରି ଶାଶ୍ୱତରେ ଚେତନା ନୋହିଲା ବାରେ ।
ଗୁରୁ ଶାସ୍ତ୍ରବାଣୀ ଧରିତୁ ହୃଦରେ ବେଳ ହୁଁ ଶରଣ ପଶ
ଆଧାର ଆଧେୟ ପରମ ପଥରେ ରଖ ଅତୁଟ ବିଶ୍ୱାସ ।



# ଦିବ୍ୟ ଅନୁଭବ

ପରତେ ନୋହୁଛି ମାନସେ ନିତ୍ୟ ଦିବ୍ୟ ଶକତି
ଦର୍ଶନେ ଶୋଭନ ସରସ ରମ୍ୟ ସେହି ବିଭୂତି ।
ଶଇଳ ସାଗର ସରିତ ଶିଳା ଶ୍ୟାମଳ କ୍ଷେତ
କାନନ ବାଟିକା କୁସୁମେ ଫଳ ଚିତ୍ତ ମୋହିତ ।
ସରବ ଶୋଭନ ମୋହନ ସେହି ଦିବ୍ୟ ମୂରତି
ନୟନେ ଦର୍ଶନ ନୁହଁଇ କହି ନୁହେଁ ଭାରତୀ ।
ବିବିଧ ବରଣ ରୂପରେ ମୋହି ଜଗତ ଜନ
ସକଳ ସାରରେ ଗୋପନେ ସତ୍ୟ ବିଶ୍ୱ ମୋହନ ।
ସଦାକାଳେ ରହିଅଛନ୍ତି ସର୍ବ ପ୍ରାଣୀ ଅନ୍ତରେ
ଅନୁଭବ କରିପାରନ୍ତେ ବିଭୁ କରୁଣା ଧାରେ ।
ମାନବ ଜୀବନ କାରଣ ଦିବ୍ୟ ସେ ଅନୁଭବ
ବିଭୁ ଗୁରୁକୃପା କାରଣେ ଅନୁଭବ ସଂଭବ ।



# ଆତ୍ମ ସ୍ୱରୂପ

ମାନବ ଜୀବନେ ମୁକତି କାମନା ଉଦୟ ହୁଏ ଯା' ହୃଦେ
ମହତ ସେ ନର ଧନ୍ୟ ତା' ଜୀବନ ଯା' ମନ ପରମ ପଦେ ।
ବିଷୟା ରସରେ ପଞ୍ଚ ଇନ୍ଦ୍ରି ସୁଖ ଶବଦ ପରଶେ ମତି
କ୍ଷଣକରେ ନାଶ ହୁଅଇ ହରଷ ସନ୍ତାପ ଦିଗକୁ ଗତି ।
ବିଷ ପ୍ରାୟ ଯେହୁ ବିଷୟା ତେଜଇ ଧନ୍ୟ ସେହି ନର ବୀର
ଜୀବନ ପ୍ରବଳ ଜଞ୍ଜାଳ ତୁଟାଇ ଦିବ୍ୟମାର୍ଗେ ଆଗୁସାର ।
ଶିଶୁ ସରଳତା ସନ୍ତୋଷ ଧୀରତା ଦୟା କରେ ଗଳାହାର
ସତ୍ୟାମୃତ ପାନେ ଦିନୁଦିନ ବୃଦ୍ଧି ଶେଷେ ପୂର୍ଣ୍ଣ ଚନ୍ଦ୍ରାକାର ।
ପୃଥ୍ୱୀ ଜଳ ବାତ ନୋହୁ ତୁ ଅନଳ ସ୍ୱୟଂ ତୁ ନୋହୁ ଅମ୍ବର
ମୁକତି କାରଣେ ଦୃଢ଼େ ସଂକଳ୍ପିତ ସାକ୍ଷୀ ଦ୍ରଷ୍ଟା ନିରାକାର ।



# ଆତ୍ମ ଉଦ୍ଧାର

କର୍ମଫଳ ଘେନି ଭ୍ରମୁଛି ଜୀବ କାଳ ଅନନ୍ତ
ଜଳଚର ପଶୁ ବିହଗ ନର ଜୀବନେ ଅନ୍ତ ।
ଜୀବନେ ଯୌବନେ ଜାୟାର ହାତ ସଂସାର ହେତୁ
ମାନସେ ଅପାର ଆନନ୍ଦ ସୁଖ ସାଗର ସେତୁ ।
ଆତ୍ମୀୟ କୁମର ଦୁହିତା ମୁଖ ଦର୍ଶନେ ତୋଷ
ଉତ୍ତର ବୟସେ ଅନ୍ତରେ ତିଳେ ନୋହେ ସନ୍ତୋଷ ।
ଜୀବନ ସଙ୍ଗିନୀ ଯାହାକୁ କାନ୍ତା କହି ସଂସାରେ
ଜନନୀ ଭଗିନୀ ଦୁହିତା ସ୍ୱଶା ପୂର୍ବ ଜନ୍ମରେ ।
ଇହଜନ୍ମେ ତପ ସଂଯୋଗେ କଳତ୍ର ରୂପ ଧରି
ସନ୍ତାନ ଦୁହିତା ସମ୍ଭାଳି ଧର୍ମ ମାର୍ଗ ସଂଚରି ।
ପୂର୍ବ ଜନମରେ କେହୁବା ପିତା କେ'ବା ଦୁହିତା
ଆତ୍ମ ପରିଚୟ ପ୍ରାପତି ହେତୁ କେ ସମରଥା ।
ଜନ୍ମେ ଜନ୍ମେ ଧନ୍ଦି ମୋହରେ ମରୁ ମାୟା ଆବର୍ତ୍ତେ
ଦୁର୍ଲଭ ଜନମେ ଉଦ୍ଧାର ଆପେ ନପଡ଼ି ଗର୍ତ୍ତେ ।

ସ୍ୱଶା- ମାତୃସ୍ୱଶା= ମାଉସୀ, ପିତୃସ୍ୱଶା= ପିଉସୀ



# ତାରଣ ତରଣୀ

କରି ତୁ ବିବିଧ ରଙ୍ଗରେ ଉପାୟ ଅରଜିଛୁ ଯେତେ ବିତ୍ତ
ସକଳ ସଂପଦ ସଦନ ବାହନ ଦେଖି ମନେ ବିମୋହିତ ।
ଗୃହେ ପୁତ୍ର ଦାରା ହୋଇ ଆତ୍ମହରା ବିତେ ଦିବସ ରଜନୀ
ମାନ ଯଶ ଅର୍ଥେ ତୋଷାମଦେ ମତି ଆପଣା ମହତ ହାନି ।
ଲୋଭ କାମନାରେ ପ୍ରବଳ ହୁଅନ୍ତେ ଅପଥରେ ସଦା ଗତି
ବେଦ ଶାସ୍ତ୍ରବାଣୀ ମାନସେ ନଶୁଣି ପ୍ରପଞ୍ଚରେ ଯାଏ ବିତି ।
ଯୁବା କାଳ ଭୋଗ କାମନା ଗ୍ରସିତ ଇନ୍ଦ୍ରିୟ ପ୍ରବଳ ବଳୀ
ଶୁକ୍ଳ କେଶେ ଇନ୍ଦ୍ରି ଶୀଥିଳ ହୁଅନ୍ତେ ଅଗ୍ରତେ ଲୋଭ ଆଗୁଳି ।
ଯୌବନେ ବାର୍ଦ୍ଧକ୍ୟେ କ୍ରୋଧ ଈର୍ଷାନଳ ହୃଦୟରେ ଶିଖା ତୋଳେ
ଅଶାନ୍ତ ଚିତ୍ତରେ ଜ୍ୱଳନର ରଶି ବନ୍ଧନ ହୋଇଛି ଗଳେ ।
ଶକ୍ତିହୀନ ଗାତ୍ରେ ଆକୁଳ ମାନସେ ମରଣ ସାଗର କୂଳେ
ତାରଣ ତରଣୀ ବିଭୁ ପଦ ଧାୟୀ ତରିଯିବୁ ଅବହେଳେ ।

ଆଗୁଳି=ରୋଧକାରୀ, ଅଟକାଉଥିବା



# ଅମୂଲ୍ୟ ଧନ

ସମୟ ଅଭାବ କାରଣୁ ପ୍ରଭୁହେ ନିବେଦନେ ନୁହେଁ ରତ
ପ୍ରାର୍ଥନା ଧିଆନେ ମାଳା ଜପିବାରେ ହୋଇ ନାହିଁ ମୁଁ ସତତ ।
ଚାକିରି ବ୍ୟାପାର କ୍ଷେତ କାରବାର ଧରିଲେ ଚିତ୍ତ ନିହିବି
ଅର୍ଥର ସମାଜେ ଭ୍ରମିତ ମାନସେ କେମନ୍ତେ ମନ ଥାପିବି ।
ବୃତ୍ତି ନିର୍ଦ୍ଧାରଣେ ଅଶେଷ ଜଞ୍ଜାଳ ପରିବାର ପରିଜନ
ସକାଳରୁ ସଞ୍ଜ କର୍ମ ଜାଲେ ଛନ୍ଦି ନିଶି ହୁଏ ଅବସାନ ।
ସୁତ ଯୋଗ୍ୟ ହେଲେ ଚାକିରି ସରିଲେ ଦେବି ତୁମ୍ଭ ପାଦେ ମତି
ଏକାଗ୍ର ଚିତ୍ତରେ ତୁମ ଶ୍ରୀପୟରେ ଯେସନେ ନିବେଶି ଯତି ।
ନିବୃତ୍ତ ସେବାରେ ଅର୍ଥ ଲାଳସାରେ ବିତିଗଲା ରାତି ଦିନ
ସମ୍ମାନ ଲାଳସା ଅନ୍ତରେ ଜଳିଲା ଆକୁଳ ସାଗରେ ମନ ।
ସ୍ଥବିର କାଳରେ ବ୍ୟାଧି କଳେବର ମାନସ ଅଶାନ୍ତ ସଦା
ଏକାଗ୍ର ମାନସ ହେବା ବା କିପରି କେବେଠୁ ହୋଇଛି ବିଦା ।
ଅମୂଲ୍ୟ ମାନବ ଜୀବନ ବିତିଲା ଇତର ପଶୁ ପରାୟ
ଆହାର ବିହାର ସନ୍ତାନ ସମ୍ଭବ ଶେଷେ ହୋଇବାକୁ ହାୟ ।
ଦେବ ଦୁର୍ଲ୍ଲଭ ଏ ମାନବ ଶରୀର ସାଧନା ସିଦ୍ଧି ସୋପାନ
ବାଳ କାଳୁ ତାଙ୍କୁ ହୃଦେ ଦୃଢ଼େ ଧରି ଲିଭିବୁ ଅମୂଲ୍ୟ ଧନ ।



# ଅବିନାଶୀ ଆତ୍ମା

କୁମର ବିନାଶ କଳତ୍ର ନାଶନ ବିତ୍ତ ସଂପଦ ବିଲୟ
ସମ୍ବନ୍ଧୀ ସଖାଙ୍କ ବିନାଶେ ମାନସେ ଉପୁଜେ ଖେଦ ବିସ୍ମୟ ।
ଅରଣ୍ୟ ଗହନେ ଦାବାନଳ ଯେହ୍ନେ ଦହନ କରଇ ବନ
ଆତ୍ମୀୟ ବିୟୋଗ ଭସ୍ମେ ପରିଣତ ହୁଅଇ ମନ କାନନ ।
ଜୀବନ ଧରିବା ଅକାରଣ ଲାଗେ ଭୋଜନେ ନବଳେ ମତି
ସଂସାର ସମଗ୍ରେ ରହିଛନ୍ତି ସର୍ବେ ସମକେବା ତାହା ପ୍ରତି ।
ମରୁ ପ୍ରାୟ ସାରା ଜଗତ ଦିଶଇ ଶୁଷ୍କ ନିଦାଘ ତପତ
ଆନେ କାର୍ଯ୍ୟ ନାହିଁ ହଜିଲା ସଂପତ୍ତି ପାଇଁ ପ୍ରାଣ ସନ୍ତାପିତ ।
ସୁଖ ଦୁଃଖ ଜାତ ମରଣ ସଂଯୋଗ ବିଯୋଗ ବିଧି ନିୟତ
ପ୍ରାରବ୍ଧ କାରଣେ ସଂସାରେ ମାନବ ହୋଇଥାଏ ଆତଯାତ ।
ଅଜ୍ଞାନ ପୁରୁଷ ବିଚିତ୍ର ବିଧିର ବିଧାନରେ ମୋହଗତ
ଜ୍ଞାନୀଏ ଜାଣନ୍ତି ଆତ୍ମା ଅବିନାଶୀ ଜାତ ମରଣୁ ରହିତ ।



# ବେଳଥାଉ ଜାଗ

ଗଲାବେଳେ ସଂଗେ ନେଇଯିବୁ କିବା ରଜତ ସୁବର୍ଣ୍ଣ ଯାନ
କଳତ୍ର କୁମର ବନ୍ଧୁ ସହୋଦର ସଖା ସମ୍ବନ୍ଧୀ ବା ମାନ ।
ସାଥୀରେ ଦରବ ନେଇ ନପାରିବୁ କେହି ନ ଯିବେ ସଂଗର
ଧନ୍ଦି ହୋଇ ମରୁ ଯାହାପାଇଁ ନିତି ରୋଦନ କେବଳ ସାର ।
ତୋ'ର ବିରହରେ କଳତ୍ର କ୍ରନ୍ଦନ ସୁଖ ସୁବିଧା କାରଣ
ଭୋଗ ଅର୍ଥ ସ୍ୱାର୍ଥ ଭଣା ଯିବ ହୋଇ ତା'ପାଇଁ ଶୋକ କାରୁଣ୍ୟ ।
ସଂଗୀ ଜନ କେତେ ଗଲେଣି ସେ ପୁରେ ଦେଖି ତୁ ଶିଖିଲୁ ନାହିଁ
ମହତ ଜନମ କି କାରଣେ ତୋର ଆପଣାକୁ ପୁଚ୍ଛ ଭାଇ ।
ଆହାର ବିହାର ସଂଗ୍ରହ ସଂଅୟ ସଂତାନ କୁଟୁମ୍ବ ପାଳି
ସ୍ଥବିର କାଳରେ ପଳିତ କେଶରେ ଚିନ୍ତାନଳେ ସ୍ୱୟଂ ଜଳି ।
ପରିବାର ଜନେ ଅନାଦର ଭାବ ତାତ୍ସଲ୍ୟ କଟୁ ଭାଷଣ
ଦୁର୍ବଳ ଶରୀର ବିବଶ ମନରେ କ୍ଷତେ ଯେସନେ ଲବଣ ।
ଆହାର ଉଦରେ ପରିପାକ ନୁହେଁ ନିଦ୍ରା ବିହୀନ ରଜନୀ
କରଧୃତ ଯଷ୍ଟି ହୁଏ କମ୍ପମାନ ବଚନ ଭଜିଲା ମ୍ଳାନି ।
ଭାବିଥିଲୁ ମନେ ପରିଣତ କାଳେ ଧର୍ମ ପଥେ ଦେବୁ ମତି
ଚିନ୍ତାନଳେ ଜଳି ପୂର୍ବ ଗାଥା ଭାଳି ଅନ୍ତର ଉଠଇ ତାତି ।
ବେଳ ହୁଁ ଶ୍ରୀହରି ସୁମରଣା କରି ଗୁରୁ ଶାସ୍ତ୍ରେ ମାର୍ଗ ଧର
ପଦ୍ମ ପତ୍ରେ ନିର ହୋଇବ ଜୀବନ ତା'ମଧ୍ୟେ ଜଗଦାଧାର ।

କଳତ୍ର=ପତ୍ନୀ



# ସମଦର୍ଶୀ

ନଶ୍ୱର ଭଙ୍ଗୁର ପ୍ରିୟ ଦରବରେ ସୁଖୀ ହୁଏ ଯେତେକାଳ
ବିଯୋଗ କାରଣେ ହୃଦୟେ ଦାରୁଣ ଦୁଃଖ ଦିଏ ଅସମ୍ଭାଳ ।
ପରିବାର ସେହି ରୂପ ଛବି ନାଚି ଅନ୍ତର କରେ ଦହନ
ମୋହିତ ମାନସେ ସଂଯୋଗ ସୁଖରୁ ବିଯୋଗେ ଅମାପ ଗୁଣ ।
ଆତ୍ମୀୟ ସ୍ୱଜନ ହରାଇ ମାନବ ଶୋକ ଆକୁଳେ ଭାଷଇ
ସୁମରି ତହାର ଗୁଣ ଗାଥାମାନ ହୃଦେ ଗୁଞ୍ଜରୀ ଉଠଇ ।
ଅଜ୍ଞାନ ପୁରୁଷ ମୋହାଚ୍ଛନ୍ନ ହୋଇ ସଂତାପ ସାଗରେ ଭାସେ
ଜ୍ଞାନ ମୋହ ନାଶି ସଂତାପୁ ତାରଇ 'ବାସ୍ତବ' ନେତ୍ରେ ଉଦ୍‌ଭାସେ ।
ଶରୀର ମାନସ କଷଣ ଆଘାତ 'ବିଚାର' ଔଷଧେ ନାଶ
ଅଳୀକ ସଂସାର ବିଶୁଦ୍ଧ ବିଚାରେ ମାନସେ ମିଳେ ସଂତୋଷ ।
ସମଦର୍ଶୀ ଚିତ୍ତେ ସଂଯୋଗ ବିଯୋଗ ସମଭାବ ଥାଏ ରହି
ଅସଂଗ ନିର୍ଲେପ ଚେତନା ଆତ୍ମା ତୁ ବ୍ରହ୍ମ ସ୍ୱରୂପ ବୋଲାଇ ।

ବାସ୍ତବ-ଯାହା ଚିରନ୍ତନ=ଆତ୍ମା
ଦେହ ନଶ୍ୱର ମାତ୍ର ଆତ୍ମା ଶାଶ୍ୱତ



# ଦ୍ୱନ୍ଦ୍ୱ ନାଶ

ତ୍ରିଦିବ ସୁନ୍ଦରୀ କାମନା କେହୁ କରେ ମାନସେ
ସୁଧାର କୁମର ବାସନା ରଖି ସାଧନା ରସେ ।
ସୁନ୍ଦରୀ ସେବାରେ ଜୀବନ କାର ହୁଅଇ ଗତ
ସଂପଦ ଅର୍ଜନ କାରଣେ ଭ୍ରମେ ସାରାଜଗତ ।
ଉଦର ପୂରଣ କରିବେ କରି ଯାବତ ଫନ୍ଦି
ସଂଚୟେ ମାନସ ପୁଲକ ଚିନ୍ତି ମରିବେ ଧନ୍ଦି ।
ସମ୍ମାନ ଆଶାରେ ଧାବିତ ହୋଇ ଖର ନିଃଶ୍ୱାସ
ଭସ୍ମ ବିଲେପନ ହୁଅନ୍ତି ମୋକ୍ଷ କରି ବିଶ୍ୱାସ ।
ସାଧନା କରନ୍ତେ ବିବିଧ ଅନ୍ତେ ଅନୁଶୋଚନା
ଭ୍ରମରେ ଭ୍ରମିତ କାନନ ଯେହେଁ ହୋଇ ବିମନା ।
ସକଳ ସଂପଦ ପୂରିଛି ଅନ୍ତରରେ ତୋହର
ଅଜ୍ଞାନ ମୂଢ଼ତା କାରଣେ ମୁକ୍ତି ଲୋଡୁ ବାହାର ।
ମମତା ଅହଂତା ଗ୍ରସିତ ହୃଦ କଲୁଷ ଭରା
ଗୁରୁଜ୍ଞାନ ନେତ୍ର ଫେଡ଼ନ୍ତେ ବୀଥି ହୋଇବ ତୋରା ।
ଚିଦାନନ୍ଦ ଘନ ମୂରତି ସ୍ୱୟଂ ହୋଇବ ବୋଧ
ତୁଟିବ ସକଳ ଜଂଜାଳ ନାଶ ଯାବତ ଦ୍ୱନ୍ଦ୍ୱ ।

ତ୍ରିଦିବ=ସ୍ୱର୍ଗ



# ମୃତ୍ୟୁ ଭୟ ଦୂର

ଧରଣୀ ଆବୋରି ଅଛି ଜଳରାଶି ଅପାର ମହାସାଗର
ତହିଁରୁ ସୃଜିତ ତିମି ମହାକାୟ ମୀନ ବିଶାଳ ମଗର ।
କାଳାନ୍ତରେ ସର୍ବେ ବିନାଶ ବିଶାଳ ଲଘୁ କାୟ ସମଦଶା
ସ୍ଥଳଚର ଜୀବେ ଜନମ ମରଣ ଦେଖନ୍ତେ ନୋହି ବିବଶା ।
ଅନ୍ତରୀକ୍ଷ ଚାରୀ ଖଗବର ଦ୍ୱିଜ ବର୍ଦ୍ଧନ ଜୀବନ ଅନ୍ତେ
ମୃତ୍ୟୁ କୋଳଶାୟୀ ହୁଅନ୍ତି ସରବେ ଅନ୍ତିମ ଭେଟ କୃତାନ୍ତେ ।
ଗଗନ ବିହାରୀ ନକ୍ଷତ୍ର ମାଳିନୀ ଅପୂର୍ବ ଆଭା ଦାୟିନୀ
ମହାକାଳ କୋଳେ ବୃନ୍ତଚ୍ୟୁତ ପୁଷ୍ପ ପ୍ରାୟ ଭଜିଥାନ୍ତି ମ୍ଲାନୀ ।
ସମ୍ଭବ ବିଲୟ ଅଦୃଶ୍ୟ ସୂତ୍ରରେ ଗ୍ରଥିତ ସାରା ସଂସାର
ଏ ତତ୍ତ୍ୱ ଜାଣନ୍ତେ ମୃତ୍ୟୁ ଭୟ ଦୂରେ ଭ୍ରାନ୍ତି ତୁଟେ ହୃଦୟର ।

କୃତାନ୍ତ=ଯମ



# ବ୍ରହ୍ମ ବିଦ୍ୟା

ସଂଶୟ ରହିତ ମୁହିଁ ବ୍ରହ୍ମ ଭାବ ଦୃଢ଼ ହୋଇଲେ ଅନ୍ତରେ
ବ୍ରହ୍ମାକାର ବୃତ୍ତି ନିଶ୍ଚୟ ହୁଅନ୍ତେ ବ୍ରହ୍ମ ବିଦ୍ୟା ସାକ୍ଷାତରେ ।
ଅବିଦ୍ୟା ବିନାଶୀ ମୁମୁକ୍ଷୁ ଜନକୁ ମୋକ୍ଷ ପଦେ ଘେନିଯାଏ
ଶ୍ରବଣ ମନନ ନିଦିଧ୍ୟାସନରେ କ୍ରମେ ପରିପାକ ହୁଏ ।
ଆଦ୍ୟରେ ଶ୍ରବଣ ମନନ କରନ୍ତେ ଭାବ ହୁଏ ସଂଚରଣ
ଅଭ୍ୟାସ ବୈରାଗ୍ୟ ଧାରଣ କାରଣେ ଅନୁଭବେ ଦୃଢ଼େ ମନ ।
ଗୁରୁଶାସ୍ତ୍ର ବାକ୍ୟେ ଶ୍ରଦ୍ଧା ଅନୁରକ୍ତି ପ୍ରଗାଢ଼େ ହୃଦରେ ଧରି
ସର୍ବଦା ଅଭ୍ୟାସ ମନନ କରନ୍ତେ ଦ୍ୱୈତଭାବ ଅପସରି ।
ମୁଁ ବ୍ରହ୍ମ ବିଚାର ନୁହେଁ ଅହଂକାର ନୋହେ ବନ୍ଧନକାରକ
ଦେହଭାବ ମନୁ ବିଦୂରିତ କରି ମଳିନ ଅହଂ ନାଶକ ।
ଆପଣାକୁ ଯେହୁ ଗରିଷ୍ଠ ବରିଷ୍ଠ ଶ୍ରେଷ୍ଠ ବିଚାରଇ ମନେ
ଅପରକୁ ମଣେ ନିକୃଷ୍ଟ ଅଧମ ଭ୍ରାନ୍ତ ବିଚାର କାରଣେ ।
ସକଳ ମଧ୍ୟରେ ବ୍ରହ୍ମ ଭାବ ଦେଖି ଅନେକ ଏକେ ବିଲୟ
ଜଗତ ଦୃଶ୍ୟରେ ଏକ ବ୍ରହ୍ମସ୍ଥିତ ବିଶ୍ୱ ସର୍ବ ବ୍ରହ୍ମମୟ ।
ପବିତ୍ର ଏ ଭାବ ବିଶୁଦ୍ଧ ପରମ ବେଦ ନିର୍ଦ୍ଦେଶ ସୂଚାଇ
ଅଖଣ୍ଡ ଆନନ୍ଦ ଶାନ୍ତ ସମାହିତ ଭବ ସାଗର ତାରଇ ।



# କଲୁଷ ବିନାଶ

ଦୃଶ୍ୟ ଅଦୃଶ୍ୟରେ ସଂସାର ସୃଜନ ପୂରି ରହିଛି କରମ
ବାହ୍ୟ ଅଭ୍ୟନ୍ତର ଲୀଳାମୟ ବିଭୁ ଜାଣନ୍ତି ସର୍ବ ମରମ ।
ବାଣୀ ପରକାଶେ ନିରବ ଯେଠାରେ ଗୁଣ ପ୍ରକାଶ କାରଣେ
ରୂପ ଶୋଭାମୟ ନୟନ ରଂଜନ ଅନୁଭବ ହୃଦ ଜାଣେ ।
ପଞ୍ଚ ଇନ୍ଦ୍ରିୟରେ ଗୋଚର ହୁଅନ୍ତେ ମାନସେ ହୁଏ ଫଳିତ
ଭାଷା ପ୍ରକାଶିଲେ ତହୁଁ ଉଣା ହୋଇ କିଞ୍ଚିତ ହୁଏ ଚିତ୍ରିତ ।
ଯତ୍ନେ ସୁବିନ୍ୟସ୍ତ ପଞ୍ଚ ଇନ୍ଦ୍ରିୟରେ ପଞ୍ଚ ମହାଭୂତ ଗୁଣ
ଚିତ୍ତେ ପ୍ରତିଭାତ ହୋଇବା କାରଣେ ବଚନେ ତା'ର ପ୍ରମାଣ ।
ପଞ୍ଚଭୂତ ଯହୁଁ ସୃଜନ ଲଭନ୍ତି ସେ ତ ପଞ୍ଚଭୂତ ନୋହି
ତାଙ୍କୁ ଅନୁଭବ ଦର୍ଶନ ପରଶେ ଶ୍ରବଣେ କେବା ପାରଇ ।
ମନେ ଅନୁଭବ ନୁହଁଇ ସଂଭବ ଅମନ ରାଜ୍ୟ ନିବାସୀ
ମନସୂତ୍ର ଧରି ସେ ରାଇଜେ ପଶି ଚିର କଲୁଷ ବିନାଶୀ ।



# ଏକାନ୍ତ ସ୍ତୁତି

ନେତ୍ର ପଥେ ଦୃଶ୍ୟ ଚିତ୍ର ଜଗତ
ବିଚିତ୍ର ରଂଗରେ ରମ୍ୟ ଚିତ୍ରିତ ।
ସାଗର ଲହରୀ ନୀଳିମାମୟ
ରକ୍ତ ବର୍ଣ୍ଣେ ରବି ହୁଏ ଉଦୟ ।
ଅସ୍ତଗାମୀ ଭାନୁ ଶୋଭା ଯେ
ବାରୁଣୀ ଗଗନ ବିବିଧ ବର୍ଣ୍ଣରେ ବିକାଶେ ଆପଣା ବିଭା ଯେ ॥

ରଜନୀ କାଳରେ ଶୋଭା ଅମ୍ବର
ରତନ ପୂରିତ କ୍ଷୀର ସାଗର ।
ଚନ୍ଦ୍ରମା ରାଜିତ ଅନନ୍ତ କାନ୍ତି
କଳଙ୍କ ବିନ୍ଦୁ ପ୍ରାୟ ବିରାଜନ୍ତି ।
ଅପୂର୍ବ ଶୋଭା ମଣ୍ଡନ ଯେ
ଦର୍ଶନ କରନ୍ତେ ଭକ୍ତ ପ୍ରାଣପୂତ ସକଳ ଖେଦ ଖଣ୍ଡନ ଯେ ॥

ଶଇଳୁ ଝରଇ ସଳିଳଧାର
ପଥ ନ ମାନଇ ଶିଳା ବନ୍ଧୁର ।
ଗତି ଛଳଛଳ ନାଦ ମୁଖର
ଜଳାବର୍ତ୍ତ କେବେ ପ୍ରପାତ ଧାର ।
କିଶୋରୀ ସମାନ ଗତି ଯେ
ଘନ ବୃଷ୍ଟିକାଳେ ଦର୍ଶନେ ହୃଦୟେ ଉପୁଜାଇ ମହାଭୀତି ଯେ ।

ସକଳେ ଅଦୃଶ୍ୟେ ତୁମ ବିଭୂତି
ଭୀମକାନ୍ତ ରୂପ କାହିଁ ବା ପ୍ରୀତି ।
କାହିଁ ମଧୁମୟେ ରହି ଗୋପନେ
ବନ୍ଧୁ ପ୍ରୀତି କହି ନୋହି ବଚନେ ।
ମାତା ପିତା କାନ୍ତା କାନ୍ତ ଯେ
ସରବ ଅନ୍ତରେ ନାନା ରୂପ ଗୁଣେ ବିରାଜି ଅଛ ଏକାନ୍ତ ଯେ ।



# ଯଜ୍ଞଗର୍ଭ

ନାଭି କମଳରୁ ସୃଜନ ବ୍ରହ୍ମା ପଦ୍ମ ସମ୍ଭବ
ପିତାମହ ସୃଷ୍ଟି କାରଣେ ଧାୟୀ ଚିତ୍ତେ ମାଧବ ।
ବ୍ରହ୍ମଯୋନି ବିଷ୍ଣୁ ବିଶ୍ୱାତ୍ମା ବାରେ ରଖ ଶରଣ
ଅନାଦି କାଳରେ ପ୍ରଳୟେ ପ୍ରାଣୀ ହୋଇ ନିଧନ ।
ବ୍ରହ୍ମା ଇନ୍ଦ୍ରଦେବ ଯେ କାଳେ ଲଭିଥାନ୍ତି ବିଲୟ
ବିଶ୍ୱଆତ୍ମା ବିଷ୍ଣୁ ଏକାକୀ ତିଷ୍ଠନ୍ତି ଦୟାମୟ ।
ନୀରଦ ସଲିଳ ଧରଣୀ ତହିଁ ଶସ୍ୟ ସଂଚାର
କାଳଧର୍ମେ ନିତ୍ୟ ପାଳନ୍ତି ପ୍ରାଣୀ ଗୁଣ ଆକର ।
ଅନଳ ଚନ୍ଦ୍ରମା ଭାସ୍କର ଜ୍ୟୋତି ଲଭି ଯା ପାଶୁ
ଯତି ଯୋଗୀ ଋଷି ପ୍ରବର ଯୋଗେ ହୃଦୁ ପ୍ରକାଶୁ ।
ଯୋଗାବାସ ନିତ୍ୟ ନମୁଛି ତୁମ୍ଭ ଚରଣ ତଳେ
ଯଜ୍ଞ ଗର୍ଭ ହିରଣ୍ୟ ବର୍ଣ୍ଣ ପଞ୍ଚଯଜ୍ଞ ମେଖଳେ ।

ଆଧାର- ଅନୁସ୍ମୃତି- ଶ୍ଳୋକ-୨୪-୩୦ ।
ମହାଭାରତ, ଶାନ୍ତି ପର୍ବ, P-4867



# ବିଶ୍ୱବାସ ସହାୟ

ଧନୀକ ନିର୍ଦ୍ଧନ ବିଭେଦ ବା କାହିଁ ବିଷୟ ଭୋଗ ସମୟେ
ସରବେ ମୋଦିତ ଉପଭୋଗ କାଳେ ତଦନ୍ତେ ଭାଳେ ବିସ୍ମୟେ ।
କ୍ଷଣିକ ସୁଖରେ ବାସନା ତାଡ଼ନା ପକାଏ ମହାବିପତ୍ତି
ଚେତନ ପୁରୁଷ ଚିରନ୍ତନ ସୁଖ ସାଧନାରେ ଦିବା ରାତି ।
ସଂଯୋଗ ପୂରୁବେ ଦୁଃଖର ଆଭାସ ମନରେ କାହିଁ ବା ଥିଲା
ସଂଯୋଗ ଉତ୍ତାରୁ ବିଯୋଗ କାଳରେ ସଂତାପରେ ଭସାଇଲା ।
ସ୍ୱରୂପରେ ସ୍ଥିତ ବିବେକି ପୁରୁଷ ସଂଯୋଗେ ବିଯୋଗେ ସମ
ବିଯୋଗରେ କେବେ କାତର ନହୋଇ ପଡ଼େ ନାହିଁ ମାୟା ଭ୍ରମ ।
ବିବେକ ବିଚାର ଧୃତି ଧାରଣରେ ଉପସ୍ଥ ଉଦରେ ରୋଧ
ନୟନନ୍ତ୍ରେ ହସ୍ତ ପଦର ରକ୍ଷଣେ ମନେ ନେତ୍ର ଶ୍ରୁତି ବୋଧ ।
ଗୁରୁ ଲଘୁ ସ୍ନେହ ମମତା ଆସକ୍ତି ଅନ୍ତରେ ଯେ କରେ ନାଶ
ସ୍ୱଚ୍ଛନ୍ଦେ ବିନୟେ ଭ୍ରମୁଥାଇ ବୁଧ ସହାୟ ତା' ବିଶ୍ୱବାସ ।

ଶ୍ରୁତି=କର୍ଣ୍ଣ



# କୃପାବିନ୍ଦୁ

ପୁରାଣ ପୁରୁଷ ପ୍ରଭୁ ନିତ୍ୟ ସନାତନ
ଲୋକନାଥ ଲୋକସାକ୍ଷୀ ଅନାଦି କାରଣ ।
ନମସ୍ତେ ପୁଣ୍ଡରୀକାକ୍ଷ ଭକତ ସୋଦର
ସହସ୍ରାକ୍ଷ ନମୋ ନମ ସତ୍ୟ ନିରାକାର ।
ଭୂତ ଭବ୍ୟ ଭବତ୍ ପ୍ରଭୁ ଚରଣେ ଶରଣ
ସ୍ରଷ୍ଟା ତ୍ରିଲୋକନାଥେଶ ଅନନ୍ତ ଚରଣ ।
ପଦ୍ମନାଭ ହୃଷିକେଶ ନମେ ଶ୍ରୀ ପୟର
ହିରଣ୍ୟ ଗର୍ଭ ଅମୃତ ପରରୁ ଯେ ପର ।
ଅନାଦି ଅନନ୍ତ ସର୍ବ ଲୋକ ନାଥ ପ୍ରଭୁ
ରବି ପ୍ରଭୁ କୃପାମୟ ଦୀନବନ୍ଧୁ ବିଭୁ ।
ସହସ୍ର ଶିର ପୁରୁଷ ତତ୍ତ୍ୱ ଚିନ୍ତାମଣି
ସୂକ୍ଷ୍ମ ଅଚଳ ବରେଣ୍ୟ ଭୟ ନାମ ଗୁଣି ।
ନାରାୟଣ ଯୋଗାତ୍ମାନ ଦେବ ସନାତନ
ସର୍ବତତ୍ତ୍ୱ କୃପାବହି ଅନାଦି ସଂସ୍ଥାନ ।
ଧ୍ରୁବ ଈଶ୍ୱର ପ୍ରଭୁ ହେ ସଂସାର ଉଦ୍ଧର
ସର୍ବଭୂତ ସ୍ଥିତ ନିତ୍ୟ ଦେବ ମହେଶ୍ୱର ।
ସକଳଭୂତ ଆଶ୍ରୟ ସର୍ବ ଲୋକ ବନ୍ଧୁ
ଚରାଚର ଗୁରୁବିଷ୍ଣୁ ମାଗେ କୃପାବିନ୍ଦୁ ।

ଆଧାର- ମହାଭାରତ- ଶାନ୍ତି ପର୍ବ- ମୋକ୍ଷ ଧର୍ମ
ପର୍ବ-ଅନୁସ୍ମୃତି- ଶ୍ଳୋକ ନଂ- ୧୭-୨୩



# ତନ୍ମୟ ଭାବ

ଦର୍ଶନ ଶ୍ରବଣ, ଆଘ୍ରାଣ ପରଶ
ସୁଗନ୍ଧ ମଧୁରେ ମନହୁଏ ବଶ ।
କ୍ଷଣକେ ଗମଇ ଆନ ଦରବକୁ
ତହିଁରେ ଆନନ୍ଦେ ମୋଦ ହୋଇବାକୁ ।
ଶାଶ୍ୱତ ଆନନ୍ଦ ଯାଏ ବହୁ ଦୂରେ
ସୁଖର ତରଙ୍ଗେ ଭ୍ରମଇ ଭ୍ରମରେ ।
ସତ୍ୟଠାରୁ ଦୂରେ ଘେନିବେ ଏମାନେ
ଚିନ୍ମୟ ଆଶିଷ ସୁଦୂରେ ଜୀବନେ ।
ସମୟ ବିନାଶୀ ଶରୀର ସୁନ୍ଦର
ବାଳକ ଶୈଶବ ଯୌବନ ସ୍ଥବିର ।
ବିନାଶ ପଥରେ ଜଗତ ଚାଳିତ
ଯୌବନ ସୁନ୍ଦର ବାର୍ଦ୍ଧକ୍ୟେ ପଳିତ ।
ସର୍ବସାର ସୁଖ କରିଲେ ଦର୍ଶନ
ସୁମଧୁର ଗାନ ଶ୍ରବଣେ ଗ୍ରହଣ ।
ଇପ୍‌ସିତ ମାନବେ କରିଲେ ପରଶ
ବାସ୍ତବ ଆନନ୍ଦଠାରୁ ଶସ୍ତ୍ର କୋଶ ।
ସୁଖୀ ହୋଇପାର ମାନସ ଭ୍ରମରେ
ଚିଦାନନ୍ଦ ସୁଖୀ ତନ୍ମୟ ଭାବରେ ।



# ଶାନ୍ତିଲାଭ

ଅର୍ଜନେ ସଂଚୟେ ଦିବା ନିଶି ଚିନ୍ତା ଭୋଜନେ ସ୍ୱପନେ ରୂପ
ଆହାର ବିହାର ଆନ କାର୍ଯ୍ୟ ଭାର ନହୁଅଇ ଅନୁରୂପ ।
ବର୍ଦ୍ଧିତ ସଂପଦ ସଦନ ବାହନ ଦର୍ଶନେ ମୋଦ ମାନସ
ଅର୍ଜିତ ସଂପତ୍ତି ପ୍ରଦାନେ ଆନକୁ କେବେ ନବଳେ ସାହସ ।
ଦୁହିତା କୁମର କଳତ୍ର ଭୋଗୀବେ ଅର୍ଜିତ ସର୍ବ ସଂପଦ
ସୋଦର ବାନ୍ଧବ ଅବା ପରିଜନେ କିମ୍ବା ଆଚରିବେ ଦ୍ୱନ୍ଦ୍ୱ ।
ସମାଜ ସଂସ୍ଥାନ ଦୁଃଖୀ ରୋଗୀଜନେ ଶୋଚନା କାହିଁ ବା ହେବ ?
ପିଞ୍ଜରା ଆବଦ୍ଧ ପକ୍ଷୀ ଶିଶୁ ପ୍ରାୟ ଜୀବନ ଅନ୍ତ ହୋଇବ ।
ବିପୁଳ ସଂସାର କେବା ଅସହାୟ ଚାହିଁ ବସିଛନ୍ତି ତୋତେ
ବିଶାଳ ହୃଦୟେ ସେବା କରି ଧନ୍ୟ ଶାନ୍ତି ଲଭ ଅବିରତେ ।
ଅସହାୟ ଜନେ ସହାୟ ହୁଅନ୍ତେ ମାନସେ ଶାନ୍ତି ଅପାର
ପ୍ରଶାନ୍ତ ମାନସେ ବିରାଜିତ ସଦା ଆନନ୍ଦ-ଘନ ନିକର ।



# ସତ୍ତ୍ୱଗୁଣ

ସତ୍ତ୍ୱ ରଜ ତମ ତ୍ରିଗୁଣ ବନ୍ଧନ ସକଳ ଦୃଶ୍ୟ ସଂସାର
ଆତ୍ମାଠାରେ ଗୁଣ ଆରୋପ କାରଣ ସର୍ବଥା ସିନା ଅସାର ।
ସତ୍ତ୍ୱଭାବେ ଧର୍ମ ବର୍ଦ୍ଧନ ହୁଅଇ ଭକ୍ତି ବୃଦ୍ଧି ଦିନୁଦିନ
ସାତ୍ତ୍ୱିକ ଆହାର ସାତ୍ତ୍ୱିକ ବେଭାର ଚିତ୍ତେ ସାତ୍ତ୍ୱିକ ଚିନ୍ତନ ।
ଯେ ଧର୍ମ ପାଳନେ ସତ୍ତ୍ୱଗୁଣ ବୃଦ୍ଧି ଶ୍ରେଷ୍ଠ ଧର୍ମ କହି ତାରେ
ରଜ ତମ ଗୁଣ ନାଶନ ହୁଅନ୍ତି ସତ୍ତ୍ୱଗୁଣ ପ୍ରଭାବରେ ।
ଦେଶ କାଳ ବିଦ୍ୟା କର୍ମ ଧ୍ୟାନ ମନ୍ତ୍ର ସଂସ୍କାର ସକଳ ହେତୁ
ସରବ ସାତ୍ତ୍ୱିକ ଗୁଣ ପ୍ରଭାବରେ ଚିତ୍ତେ ଦିବ୍ୟଭାବ ସେତୁ ।
ଶାସ୍ତ୍ରଙ୍କ ମର୍ମଙ୍କ ପ୍ରଶଂସା ମୁଖର ସଦା ସାତ୍ତ୍ୱିକ ବିଚାର
ରାଜସ ତାମସ ଗୁଣ ପରିହରି ସାତ୍ତ୍ୱିକେ କର ବିହାର ।
ସତ୍ତ୍ୱଗୁଣ ଚିତ୍ତେ ସଂଚରି ମାନସେ ଶରୀର ଭାବ ନାଶନ
ଶରୀର ନୁହଁଇ ଆତ୍ମା ଅବିନାଶୀ ନୁହେଁ ଇନ୍ଦ୍ରିୟ ମୁଁ ମନ ।
ଆତ୍ମବୋଧ ହେତୁ ଶରୀର ସମ୍ବନ୍ଧୁ ଭୟ ଲୋଭନାଶ ଯାଇ
ଚକ୍ରର ଆବର୍ତ୍ତ ଚଉରାଶୀ ଲକ୍ଷ ଜନମୁ ମୁକତ ହୋଇ ॥



# ଦିବ୍ୟ ସମତା

ଦିବ୍ୟ ମାଧୁରୀରେ ପୂରିତ ତୁମ ଅନ୍ତ କାନନ
ପ୍ରେମ ସୁରଭିତ ଅନିଳେ ଦୀପ୍ତିମୟ ଆନନ ।
ଯେଉଁ ବିଧି ଅନୁସରଣେ ମନେ ଅସରା ଶାନ୍ତି
ଆନେ ବିତରଣ କାରଣେ ମନ୍ନୁ ଯାଉ ଅଶାନ୍ତି ।
ଶାନ୍ତି ଦାନେ ନରେ ସନ୍ତାପ ନାଶି ସଂଚରି ମୋଦ
ଆପେ ଶାନ୍ତିମୟ ହୁଅନ୍ତେ ପ୍ରସାରଇ ବିନୋଦ ।
ନିଜକୁ ଜାଣିଲେ ସାଧନା ମାର୍ଗେ ଦିବ୍ୟଚେତନା
ସଂସାର ସଂଯୋଗ ବିଯୋଗେ ହୋଇବୁ ମହାମନା ।
ନିଜକୁ ବିଚାର କର ତୁ ଆପେ ହେବୁ ମହତ
ଅପର ତ୍ରୁଟି ବିଚାରଣେ ହୁଅ ଉଦାର ଚିତ୍ତ ।
ନିଜକୁ ନିର୍ଦ୍ଦୋଷ କରବୁ ଗୁଣ କରି ଗ୍ରହଣ
ଗୁଣଗ୍ରାହୀ ହେବୁ ଜୀବନେ ଲାଭ ପରମ ଧନ ।
ଦିବ୍ୟ ଦରପଣେ ଦେଖିବୁ ବନ୍ଧୁ ଅପରଜନ
ସମଦୃଷ୍ଟି ଚିତ୍ତେ ଦର୍ଶନେ ସ୍ୱୟଂ ହେବୁ ମହାନ ॥



# ଶରୀର ରଥ

ଶରୀର ରଥରେ ଆତ୍ମାରୂପ ରଥୀ ଅଦୃଶ୍ୟେ ବିରାଜମାନ
ସାରଥୀ ରୂପରେ ବୁଦ୍ଧି ଛନ୍ତି ତହିଁ ମନ ପ୍ରଗ୍ରହ ସମାନ ।
ଇନ୍ଦ୍ରିୟ ସକଳ ହୟ ବେଗବାନ ଧାମନ୍ତି ଶକ୍ତି ସଂଚାରି
ବିଷୟ ବାସନା ସରଣୀ ସ୍ୱରୂପ ଦିଗନ୍ତେ ଯାଏ ବିସ୍ତାରି ।
ଦଶ ଇନ୍ଦ୍ରିୟରେ ଭୋଗର ବିଷୟ କିଏ ବା କଳନା କରେ
ସମାଜ ଶରୀର ପାର୍ଥିବରୁ ଭୋଗ ଗଗନେ ଗତି ସଂଚାରେ ।
ଶରୀର ଇନ୍ଦ୍ରିୟ ମନ ଆଧାରରେ ବିଷୟ ଫଳ ଭୋଗଇ
କର୍ତ୍ତା ଭୋକ୍ତା କହି କର୍ମ ଫଳ ଭୋଗୀ ସଦାଚକ୍ରେ ଭ୍ରମୁଥାଇ ।
ମନ ବାଗ ଡୋର ସାରଥୀ ବୁଦ୍ଧିରୁ ବିବେକ ହୋଇଲେ ହୀନ
ସଂସାର ଗର୍ତ୍ତରେ ପଡ଼ି ଅନ୍ଧକାରେ ଭୋଗେ ଯାତନା କଷଣ ।
ବିବେକୀ ପୁରୁଷ ମନ ଆୟତ୍ତରେ ପରମ ପଦ ଲଭଇ
ଚଉରାଶି ଲକ୍ଷ ଆବର୍ତ୍ତ ନିବୃତ୍ତ ଜନ୍ମ ମୃତ୍ୟୁ ଲଙ୍ଘି ଯାଇ ।

ଯମଗୀତା-ଅଗ୍ନିପୁରାଣ-ପୃ-୨୭୪



# ଶାନ୍ତଚିତ୍ତ

ପଞ୍ଚ ବିଷୟରେ ପଞ୍ଚ ଇନ୍ଦ୍ରି ବଶ
ସେ ସୁଖ କାରଣେ ମାନସ ବିବଶ ।
ଜୀବନେ ଅଶେଷ ଶ୍ରମ ଶେଷେ କରି
ସନ୍ତାପ ସାଗରେ ନିତ୍ୟ ବୁଡ଼ି ମରି ।
ଅପାର ଲହରି ସଂକଟ ଦୁର୍ଭାର
ପଦେ ପଦେ ଖେଦ ଆଣେ ଦୁର୍ନିବାର ।
ସକଳ ସର୍ବତ୍ର ସଂତୋଷ ଯା' ହୃଦେ
ସଂତୋଷ ଅମୃତେ ଚିତ୍ତ ତା'ର ମୋଦେ ।
ସୁଖ ଶାନ୍ତି ବିରାଜଇ ତା' ଅନ୍ତର
ଶାନ୍ତ ସମାହିତ ପ୍ରେମପୂର୍ଣ୍ଣ ଗିର ।
ଧନ ଲୋଭୀ ମନ ସଦା ବିଚଳିତ
ଏଣେ ତେଣେ ଧାଏଁ ଅଜ୍ଞାନ ସତତ ।
ଅସଂତୋଷାନଳ ଶିଖା ତୋଳି ଜଳେ
ବିଚାର ନଥାଇ ପରାଣ ବିକଳେ ।
ଅସଂତୋଷ ସମ ଦୁଃଖ ଅବା କାହିଁ
ସଂତୋଷ ପରମ ସୁଖ ଶାସ୍ତ୍ର କହି ।
ସୁଖ ଲାଭ ଆଶା ଅଛି ଯେବେ ମନେ
ସଂତୋଷ ସ୍ଥାପନ ମାନସ ମନ୍ଥନେ ।
ବିକ୍ଷେପ ମାନସ ଶାନ୍ତ ହେବ ତହିଁ
ଏକାଗ୍ର ହୃଦରେ ଉଦେ ଭାବଗ୍ରାହୀ ।



# ପଞ୍ଚ ବିଷୟ

ଶବଦ ଶ୍ରବଣ କରିବା କାରଣେ ମୃଗ ମାରଣ ବରଣ
ମଧୁର ଶବଦ ଅନୁସରି ଯାଏ ବ୍ୟାଧ ଜାଲରେ ବଂଧନ ।
ପରଶ କାରଣେ ମତ୍ତ ଗଜରାଜ ଧୃତ ସ୍ୱାଧୀନତା ନାଶ
ପରଶ ଲାଭରେ ମାନବ ଭ୍ରମରେ ଧାମଇଁ ଶେଷ ନିଃଶ୍ୱାସ ।
ମୋହନ ରୂପରେ ପ୍ରାପତି କାରଣେ ପତଙ୍ଗ ଅନଳେ ଯାଏ
ଲାବଣ୍ୟ ମାଧୁରୀ ଭ୍ରମିତ ମାନବ ମରୀଚିକା ପଥେ ଧାଏଁ ।
ରସ ଅନୁସରି ଆସ୍ୱାଦ ଲାଳସା ମୀନ ମୃତ ବଡ଼ଶୀରେ
ଆହାର ଲୋଭରେ ଭ୍ରମୁଥାନ୍ତି ନରେ ରସ ବାସନା ନସରେ ।
ସୁଗନ୍ଧ କୁସୁମ ଅନୁସରି ଭୃଙ୍ଗ ପଶି କମଳ କୋଳରେ
ଜୀବନ ହାରଇ ମହତି ଦୁର୍ଗତି ଥାଇ କି ଆଉ ସଂସାରେ ।
ବିଷୟା ରସରେ ପଞ୍ଚ ଇନ୍ଦ୍ରି ସୁଖ ଲାଭ କରିବାକୁ ନରେ
ମୁକତ ଆଶା ବା ଚିତ୍ତେ କାହିଁ ହେବ ଇନ୍ଦ୍ରିୟ ରଜ୍ଜୁ ଦୁସ୍ତରେ ।

**ବଡ଼ଶୀ=ବନିସି, ରଜ୍ଜୁ=ରଶି, ଦୁସ୍ତର=କଷ୍ଟସାଧ**



# ଆତ୍ମ କଲ୍ୟାଣ କୋଇଲି

କୋଇଲି ଲୋ ! ଆପଣାର ହିତରେ ସରବେ
ଦେବ ପୂଜା ଯାଗ ଯଜ୍ଞ କରିଥାନ୍ତି ଭବେ, ଲୋ କୋଇଲି ।
କୋଇଲି ଲୋ ! ମାତା ସୁତା ଗଲେ ଦେବାଳୟେ
ଆପଣା ଶୁଭ ଇଚ୍ଛନ୍ତି ଛନ୍ତି ଯେ ନିଳୟେ, ଲୋ କୋଇଲି ।
କୋଇଲି ଲୋ ! ପରହିତ ସାଧନେ ଯା' ମତି
ଅନ୍ତର୍ଯ୍ୟାମୀ ସଦାକାଳେ ପ୍ରୀତ ତାହା ପ୍ରତି, ଲୋ କୋଇଲି ।
କୋଇଲି ଲୋ ! ବନ୍ଧୁ ପରିଜନେ ତା'ରେ ପ୍ରୀତ
ଯେଣୁ ସେ ମନେ ଭାବନ୍ତି ସରବଙ୍କ ହିତ, ଲୋ କୋଇଲି ।
କୋଇଲି ଲୋ ! ଶାନ୍ତିଦେବୀ ତା' ଅନ୍ତରେ ରାଜି
ଶାନ୍ତି ସଂଗେ ସୁସଂତୋଷ ହୃଦୟେ ବିରାଜି, ଲୋ କୋଇଲି ।
କୋଇଲି ଲୋ ! ଆନ ହିତେ କରେ ଯେହୁ ତ୍ୟାଗ
ତ୍ୟାଗେ ପ୍ରେମ ବିକାଶଇ ପରମ ସୌଭାଗ୍ୟ, ଲୋ କୋଇଲି ।
କୋଇଲି ଲୋ ! ସୁ ନିର୍ମଳ ଭାବ ସୁଖ ରାଶି
ହୃଦୟ ସାଗରେ ଯଥା ପ୍ରକାଶିତ ଶଶୀ, ଲୋ କୋଇଲି ।
କୋଇଲି ଲୋ ! ମାନସରେ ଅପୂର୍ବ ପ୍ରଶାନ୍ତି
ଶାନ୍ତିମୟ ଚିତ୍ତେ ବିଭୁ ସ୍ୱୟଂ ବିରାଜନ୍ତି, ଲୋ କୋଇଲି ।



# ଜ୍ଞାନାମୃତ

ପରମ ଈଶ୍ୱର ଅପାର କରୁଣା ପୁରୁଷ ସାର ସେ କହି
ସମ୍ଭବ ମରଣ ମହାନ ଭୀତିରୁ ଅଦ୍ୱୈତ ବାସନା ହୋଇ ।
ସକଳ ସଂସାର ବ୍ୟାପୀ ରହିଅଛି ନିରାକାର ସର୍ବ ଦେହୀ
ଜୀବରୁ ଅଭିନ୍ନ ଆତ୍ମତତ୍ତ୍ୱ ରୂପ କଲ୍ୟାଣ ସ୍ୱୟଂ ବିଦେହୀ ।
ପଞ୍ଚ ମହାଭୂତ ରଚିତ ଜଗତ ମିଥ୍ୟା ମରୀଚିକା ସମ
ମାୟା ମଳହୀନ 'ମୁଁ' ଏକ ବିରାଜେ କରିବି କାରେ ପ୍ରଣାମ ।
ସର୍ବ ସ୍ୱରୂପ ଯେ ସକଳ ରୂପରେ ଦୃଶ୍ୟ ହୁଅଇ ସଂସାରେ
ଗଗନ ସଦୃଶ ସ୍ୱଭାବ ନିର୍ମଳ ବିରାଜିତ ସର୍ବଠାରେ ।
ବିନାଶ ରହିତ ଅନନ୍ତ ଅବ୍ୟକ୍ତ ଶୁଦ୍ଧ ବିଜ୍ଞାନ ସ୍ୱରୂପ
ଆନନ୍ଦ ବିଷାଦ ହୁଅଇ କିପରି ନଜାଣଇ ତା'ର ରୂପ ।
ମାନସିକ କର୍ମ ନୁହେଁ ଶୁଭା ଶୁଭ ଶରୀର ଧର୍ମ ନଥାଇ
ବାଚିକ କର୍ମରେ ଶୁଭା ଶୁଭ କାହିଁ ଜ୍ଞାନାମୃତ ଶୁଦ୍ଧ ମୁହିଁ ।

ଅବଧୂତ ଗୀତା



# ଅଭିମାନ ନାଶ

ଧନ ମାନ ଯଶ ପ୍ରତିଷ୍ଠା ପୌରୁଷ ଅହଂକାରର କାରଣ
ଅହଂକାର ନାଶ ଯେ ଦିନେ ଘଟିବ ଲଭିବୁ ବିଭୁ ଚରଣ ।
ଅନ୍ତରେ ପୂରିତ ସକଳ ପ୍ରପଞ୍ଚ ଦିବ୍ୟଭାବେ ସ୍ଥାନ କାହିଁ
ଦେବଭାବ ହୃଦେ ଦ୍ରବିତ ହୁଅନ୍ତେ ସାହା ହେବେ ଭାବଗ୍ରାହୀ ।
ବିଦ୍ୟା ବିତ୍ତ ମାନ ଯାହା ରହିଅଛି ସକଳ ତାଙ୍କ ବିଭୂତି
କୃତାଞ୍ଜଳି ପୁଟେ କୃତଜ୍ଞ ଅନ୍ତରେ ସମର୍ପଣେ କର ନତି ।
ଶରୀର ସମ୍ପଦ କୁଟୁମ୍ବ ବାନ୍ଧବ ସବୁରି ତାଙ୍କରି ଦାନ
ନିଷ୍କାମ ମାନସେ କର୍ମଯୋଗ ରତେ ମାନବ ହୁଏ ମହାନ ।
ନିଷ୍କାମ କରମେ କର୍ତ୍ତାଭାବ ନାଶ ଫଳ ବା ଫଳିବ କାହୁଁ
ଶୁଭାଶୁଭ ଫଳ କର୍ତ୍ତା ଯେଣୁ ନୋହୁ ଫଳଭାଗୀ ତୁହି ନୋହୁ ।
କର୍ମଫଳ ଯେବେ ବୀଜହୀନ ହୁଏ ଭବ ଚକ୍ରୁ ମୁକତ
ମାନବ ଜନମେ ପରମ ସାଧନା ଆନନ୍ଦଘନେ ଯୁକତ ।

ଆନନ୍ଦଘନ=ପରମବ୍ରହ୍ମ



# ମୁମୁକ୍ଷୁ ଦୃଷ୍ଟି

ମୁମୁକ୍ଷୁ ଭାବନା ଅନ୍ତରେ ଜାଗ୍ରତ ପୂର୍ବ ତପସ୍ୟା ସାଧନ
ସ୍ୱପନ ପରାୟ ପ୍ରତିଭାତ ହୁଏ ଅଳୀକ ସଂପଦ ଧନ ।
ଶୟନ ନାଶନେ ନିଦ୍ରାଗଲେ ତୁଟି ସପନ ରାଇଜ ନାଶ
ସଦନ ମନ୍ଦିର ପୁରୁଷ ନାରୀଏ କ୍ଷଣେ ଲଭନ୍ତି ବିନାଶ ।
କ୍ଷଣକେ ସକଳ ରାଜେନ୍ଦ୍ର ଭବନ ବାସ୍ତବେ ଲବେ ନଥାଇ
ସ୍ୱପନ ମଧୁର ମିଳନ ମାଧୁରୀ ବିଧୁର ପରାଣେ କାହିଁ ।
ଆଜି ଯେ ବିଶାଳ ସଉଧ ମାଳିନୀ କାଳଦନ୍ତ ଘାତେ ଲୟ
ବିଜୟୀ ମୁକୁଟ ଶିରପରେ ଯା'ର କାଳାନ୍ତରେ ପରାଜୟ ।
ସଂସାର ଶୋଭନ ଦିବ୍ୟା ଦିବ୍ୟମାନ ସରବ ବ୍ରହ୍ମ ସ୍ୱରୂପ
ବିଜ୍ଞାନ ନେତ୍ରରେ ପ୍ରତିଭାତ ହୋଇ ଧାରଣ ଦ୍ରଷ୍ଟାର ରୂପ ।
ଜୟ ପରାଜୟ ଭଲ ଅବା ମନ୍ଦ ମାନ ଅପମାନେ ସମ
ପ୍ରତ୍ୟକ୍ଷାନୁମାନେ ବୋଧହୁଏ ଯାହା ଏକ ବ୍ରହ୍ମ ସର୍ବସମ ।



# କାରଣ ଦୃଷ୍ଟି

ସାଧୁ ଶୁଦ୍ଧ ହୃଦପଦ୍ମେ ରାଜେ ପୂର୍ଣ୍ଣାନନ୍ଦ
ସଂସାର ବନ୍ଧନ କାର୍ଯ୍ୟେ ନଥାଇ ଆନନ୍ଦ ।
କାର୍ଯ୍ୟ ସମର୍ପି ଇଷ୍ଟଙ୍କୁ ଲଭଇ ସଂତୋଷ
ଫଳ ଇଷ୍ଟ ଦେବେ ଯାହା ନୁହଁଇ ବିରସ ।
ପୂର୍ବ ଜନ୍ମ କର୍ମ ଫଳେ ସକଳ ପ୍ରାପତି
ବିଦ୍ୟାଧନ କୁଳମାନ ସନ୍ତାନ ସଂତତି ।
ପୂର୍ବ ପାପ ଫଳେ ପ୍ରାପ୍ତି କାୟ ମନେ କ୍ଳେଶ
ଶୁଭ କର୍ମ ଏ ଜନମେ କରତୁ ବିଶେଷ ।
ସଦବୁଦ୍ଧି ସଂଚାରଣେ କର ବିଭୁ ଦୟା
ଦିବ୍ୟାନନ୍ଦେ ପୂର୍ଣ୍ଣ ହେଉ ତୁଟୁ ଭବମାୟା ।
ପରମ ଚରମ ସତ୍ୟ ହେଉ ପ୍ରତିଭାତ
ଅନ୍ତିମ କାରଣ ଦୃଷ୍ଟି ଦିଅ ବିଶ୍ୱତାତ ।



# ଆତ୍ମ ପରିଚୟ

ଶରୀର ପୂରୁବେ ନଥିଲା ମରଣରେ ବିନାଶ
ମରଣେ ସଂସ୍କାର କାରଣେ ପଞ୍ଚ ଭୂତରେ ଶେଷ ।
ସୃଜନ ଆହାର ବିହାରେ ପୁଷ୍ଟ ହୁଅଇ ଗାତ୍ର
ମରଣେ ଭୂତରେ ମିଶଇ ତହିଁ ଯଥା ଏକତ୍ର ।
ଶରୀର ତୁମର ନୁହଁଇ ତୁମେ ନୁହଁ ଶରୀର
ଅନନ୍ତ ପଥରେ ପଥିକ ଶରୀରରୁ ବାହାର ।
ଶରୀର ଇନ୍ଦ୍ରିୟ ଆଶ୍ରୟେ ଯେବା କର୍ମ କରିଛ
କର୍ତ୍ତୃତ୍ୱାଭିମାନ କାରଣେ ଫଳ ସଂଚି ରଖିଛ ।
ଅଶୁଭ ଶୁଭ ଫଳ ଭାଗୀ ହୋଇ ଶରୀର ନାଶ
ନବୀନ ଶରୀର ଗ୍ରହଣେ ଘଟେ କରେ ପ୍ରବେଶ ।
ତେଣୁ ତୁ ଶରୀର ନୋହୁ ତୁ ନାଶ ନାହିଁ ତୋହର
ଅଜର ଅମର ଶାଶ୍ୱତ ଦ୍ରଷ୍ଟା ସାକ୍ଷୀ ଭୂତର ।

ଭୂତ=ପଞ୍ଚମହାଭୂତ(ଶରୀର)



# ବିରଳ ପ୍ରାଣୀ

ସକଳ ଅରଣ୍ୟ ସନ୍ଧାନେ ଚନ୍ଦନତରୁ କାହିଁ
ସରସୀ ସନ୍ଧାନେ ମରାଳେ କାହିଁ ମିଳନ୍ତି ତହିଁ ।
ସରବ ଗଜରେ ମୁକୁତା ଅବା କାହିଁ ରହିବ
ଉରଗ ସରବ ମସ୍ତକେ ମଣି କାହିଁ ବା ଥିବ ।
ସହସ୍ର ଧେନୁରୁ ଗୋଟିନା ପ୍ରାପ୍ତି ତହୁଁ ବିରଳ
ମୃଗ ସରବରେ କସ୍ତୁରୀ ମୃଗ ତହୁଁ ଅତୁଳ ।
ମାନବ ସର୍ବତ୍ର ଦର୍ଶନେ ସାଧୁ ମିଳନ୍ତି କାହିଁ
ସାଧୁ ସଙ୍ଗ ବିନୁ ମୁକତି ଜ୍ଞାନ ମିଳଇ ନାହିଁ ।
ତପସ୍ୟା ପୂରବେ ଆଚରି ଥିଲେ ସାଧୁ ସଂଗତି
ମଳୟେ ଚନ୍ଦନ ପରାୟ ଫେଡ଼ି ସରବ ଭ୍ରାନ୍ତି ।
ଅଭାଗା ସେ ନର ଭ୍ରମଇ ପଶୁ ପ୍ରାୟ ନିକର
ଆହାର ବିହାରେ ବିନାଶ କରେ ନର ଶରୀର ।
ମହତ ଜନମ ମାନବ କରି ଆତ୍ମ କଲ୍ୟାଣ
ଈଶ୍ୱର ପରମ ପଦକୁ ଧ୍ୟାୟୀ ନିଅ ଶରଣ ।



# ତରୁ ଗୁରୁ

ବୃକ୍ଷ ପ୍ରାୟ ସହି ଆତପ ଦାନେ ଶୀତଳ ଛାୟା
ପଥିକ ଆଶ୍ରିତ ଜନକୁ ସେବି କରେ ସୁଦୟା ।
କୁସୁମ ସୁବାସେ ବିତରି ଯାଏ ଦିଗ ବିଦିଗ
ଦେବତା ମାନବେ ପୀରତି ବଳିଥାଏ ସୁହାଗ ।
ମାନସ ପୂରଣ କାରଣେ ଗୁନ୍ଥି ମାଳା ଯତନେ
ଦେବ ଶିରେ କରେ ଅର୍ପଣ ନାନା ବିଧି ବିଧାନେ ।
ଗିରୀଶ ନରେଶ ଗଳାରେ କେବା ଦିଏ ଲମ୍ବାଇ
ସନ୍ତୋଷେ ତାହାକୁ ଅଭୟ ଦ[illegible] ଫଳ ଲଭଇ ।
ଜୁଡ଼ାରେ ଚୂଡ଼ାରେ ଲମ୍ବାଇ କର୍ଣ୍ଣେ କର୍ଣ୍ଣ ଭୂଷଣ
କିଶୋର କିଶୋରୀ ଘେନନ୍ତି ହୃଦେ ପ୍ରେମ ବନ୍ଧନ ।
ଫଳ ଭାରେ ନମ୍ର ହୁଅନ୍ତି ଯେହ୍ନେ ବିଦୂଷ ଜନ
ଶାଖାରେ ମଧୁରେ ବିହଗ କରୁଥାନ୍ତି କୂଜନ ।
ସୁସ୍ୱାଦୁ ସୁପକ୍ୱ ଫଳକୁ ମୋଦେ ପଥିକ ସେବା
ବନେ ବନଚର ପରଣୀ ମୁଖେ ଅମୃତ କିବା ।
ସକଳ ଦାନେ ମହାତରୁ ଲଭେ ପରମ ମୋଦ
ତରୁ ପ୍ରାୟ ଦାନୀ ହୋଇଲେ ଲଭିବୁ ତୁ ଗୋବିନ୍ଦ ।



# ଜୀବନ ଯନ୍ତ୍ରଣା

ଜନନୀ ଜଠରେ ଦଶମାସ ବାସ ଅନ୍ଧକାର କାରାଗାର
କଲୁଷ ପୁରୀଶ ମୂତ୍ର ପିତ୍ତ କଫ ତହୁଁ ନଥାଇ ନିସ୍ତାର ।
ମାତାର ଆହାରେ ଷଡ଼ ରସେ ପିଷ୍ଟ ଦୁସହ କଷଣ ଘୋର
ବେଦନା ଅପାର ପ୍ରକାଶି ନୁହଁଇ ସାକ୍ଷାତ ନରକ ପୁର ।
ବାଲୁତ କାଳରେ ପରାଧୀନ ପ୍ରାୟ ମାତା ଗୁରୁଙ୍କ ତାଡ଼ନା
ଆହାର ବିହାର ସ୍ୱଇଚ୍ଛାରେ ହେବା ତହିଁ ମହା ବିଡ଼ମ୍ବନା ।
ଅପ୍ରାପ୍ତ ଦରବ ପ୍ରାପତି କାରଣେ ରୋଷ ପ୍ରହାର ଯାତନା
ପିତା ମାତା ଗୁରୁ ପ୍ରହାରି ବାଳକେ ମନେ ଲଭନ୍ତି ସାନ୍ତ୍ୱନା ।
ଯୌବନେ ବିଷୟ କରେ କବଳିତ ନମିଳେ ତହୁଁ ମୁକତି
ବାର୍ଦ୍ଧକ୍ୟେ ଦୁର୍ବଳ ବ୍ୟାଧି କଳେବର ଲଭେ ଦାରୁଣ ଦୁର୍ଗତି ।
କଳତ୍ର ଆତ୍ମଜ ଅପମାନ ବାଣୀ କ୍ଷତେ ଯେସନେ ଲବଣ
ମରଣ କାଳରେ ଯନ୍ତ୍ରଣା ତାପିତ ଶତବୃଶ୍ଚିକ ଦଂଶନ ।
ଜନନୀ ଗରଭୁ ଦୁଃଖାନଳେ ଜଳି ଏନ୍ତୁଡ଼ିରେ ସନ୍ତାପିତ
ଜୀବନେ ଯାତନା ବଢ଼େ ଦିନୁଦିନ ଚିତାନଳେ ନିର୍ବାପିତ ।
ଜନମେ ଜନମେ ମହାଦୁଃଖ ଭୋଗୀ ଏ ଜୀବନେ ହେଉ ଅନ୍ତ
ଆତ୍ମଜ୍ଞାନ ପଥ ଅନୁସରି ଯାନ୍ତେ ସାକ୍ଷାତ ନୋହେ କୃତାନ୍ତ ।



# ଭ୍ରମନାଶ

କେତେ ଦିନ ଆଶେ ଶରୀର ପ୍ରାପତି ବିନାଶ ହୋଇବ କେବେ
ନିଜ ଇଚ୍ଛା ମତେ ଦଣ୍ଡେ କି ନିମିଷେ ରହି ନପାରିବୁ ଭବେ ।
ପାନ୍ଥଶାଳା ପ୍ରାୟ ଆଶ୍ରୟ କରିଛି ଜୀବ ଶରୀର ଆବୋରି
ଚିର କାଳ ତହିଁ ରହିଯିବ ଅର୍ଥେ ମନେ ବାନ୍ଧେ ଆଶାତରୀ ।
ନାମ ରୂପ ଜାତି ଆଶ୍ରମ ନିବାସୀ ସଂବନ୍ଧ ବା ପରିଣାମ
କିଏ ବୋଲି ପ୍ରଶ୍ନ ପୁଛନ୍ତେ ଉତ୍ତର ଦେଇଥାଏ ହୋଇ ଭ୍ରମ ।
ଜାତ ହେବା କାଳେ ନାମ କିବା ଜାତି ଜାଣିକି ଥାଏ ସେ ଶିଶୁ
ଆନ ଦତ୍ତ ନାମେ ପରିଚିତ ହୁଏ ସଂସାରେ ଅଭ୍ୟାସ ବଶୁ ।
ଦେବ ଲୋକ ବାଞ୍ଛା କରନ୍ତି ଯେତନୁ ଆତ୍ମଜ୍ଞାନ ଧନ ଲାଭ
ବୃଥା ଭୋଗ ଇନ୍ଦ୍ରି କ୍ଷଣିକ ସୁଖରେ ଗତ ଜୀବନ ଦୁର୍ଲଭ ।
ଆଦିକାଳୁ ନାମ ଗୋତ୍ର ହୀନ ଜୀବ ଅନନ୍ତ ଘଟ ଭ୍ରମଣ
ନର ଦେହେ ତରି ଗୁରୁ ଶାସ୍ତ୍ର ବାକ୍ୟେ ଚୌରାଶୀ ଲକ୍ଷ ମରଣ ।



# ସାଧୁସଂଗ

ପୂର୍ବଭାଗ୍ୟ ଥିଲେ ସାଧୁ ସଂଗ ହୋଇ
ସାଧୁ ଦରଶନେ ମୁଖ ଉଜଳଇ ।
ହୃଦୟୁ ଦୁର୍ଭାବ ହୁଏ ବିଦୂରିତ
ଅହଂକାର ମନୁ ଦୂରେ ତିରୋହିତ ।
ଆତ୍ମଜ୍ଞାନ ଚିତ୍ତେ ଅଂକୁରି ଉଠଇ
ଅଦୃଶ୍ୟ ଶକତି ହୃଦେ ବିରାଜଇ ।
ଷଡ଼ରିପୁ ହୃଦୁ ଲଭନ୍ତି ବିଦାୟ
ମାନସେ ନିଶ୍ଚଳ ଏକାଗ୍ର ଉଦୟ ।
ମାୟା ତେଜି ମନ ନିର୍ମଳ ବିମଳ
ମିତ୍ର ଭାବେ ଚିତ୍ତ ହୁଏ ଛଳଛଳ ।
ବଇରୀ ସକଳ ମିତ୍ର ନେତ୍ରେ ଦୃଶ୍ୟ
ରଜତ ପରାୟ ପ୍ରକାଶଇ ହାସ୍ୟ ।
ଆତ୍ମ ଅଭିମାନ ଲଭଇ ବିଲୀନ
ଆତ୍ମଶକ୍ତି ତେଜ ଅଙ୍କୁର ନବୀନ ।
ସକଳ ପରାଣୀ ଆତ୍ମାର ସ୍ୱରୂପ
ମଧୁମୟ ବିଶ୍ୱ ଆତ୍ମ ଅନୁରୂପ ।
ବ୍ରହ୍ମ ଦରଶନ ସରବ ଘଟରେ
ଜୀବ ବ୍ରହ୍ମଭାବ ରାଜେ ନିରାକାରେ ।



# ପରିବର୍ତ୍ତନ ଶରୀର

ଶୈଶବ ଲାବଣ୍ୟ ଯୌବନରେ ଲୀନ
ମାନସେ ଉଦୟ ନୂତନ ବିଧାନ ।
ବାଲୁତ କାଳରେ କ୍ରୀଡ଼ନକେ ମତି
ଯୁବକ ଯୁବତୀ ପ୍ରେମେ ଯାଏ ବିତି ।
ସଂପଦ ସମ୍ମାନ ମାନସ ଆକୁଳ
ଧାମଇଁ ବୟସେ ନାହିଁ ଥଳକୂଳ ।
ବାର୍ଦ୍ଧକ୍ୟେ ଜର୍ଜର ତନୁ କଦାକାର
ସାମର୍ଥ୍ୟ ନଥାଇ ପାଦ ଚାଲିବାର ।
ଶରୀର ସୁରୂପ ମନେ ଭାବ ରାଜି
ବଦଳି ଯାଉଛି ନିତ୍ୟ କାଲି ଆଜି ।
ଦ୍ରଷ୍ଟା ସାକ୍ଷୀ ଭାବ ଅଟଳ ଅଚଳ
ମୁଁ ହିଁ ସେହି ବ୍ରହ୍ମ ସଦା ଅବିଚଳ ।
ଏହି ଭାବ ଦୃଢ଼େ ହୃଦୟରେ ଧର
ଲଙ୍ଘିଯିବୁ ଜନ୍ମ ମୃତ୍ୟୁ ପାରାବାର ।



# ବିସ୍ମୃତି

କେତେ ବାର ଜାତ ହୋଇଛି ସଂସାରେ
ସ୍ମରଣ ଅଛିକି ତୋ ସ୍ମୃତି ପଟରେ ।
କେବା ତା' ଜନନୀ କିଏବା ପିଅର
କୁମର ଦୁହିତା କଳତ୍ର ସୋଦର ।
କେତେ ବାର ଗର୍ଭେ ହୋଇଛି ଶୟନ
ଶରୀର ଶ୍ମଶାନେ ଭସ୍ମେ ଅବସାନ ।
ସଦନ ନିର୍ମାଣ କରି ଇଚ୍ଛା ମତେ
ଗୋଧନ ସଂପଦ ଥିଲା ତୋ'ର କେତେ ।
କେ ସଖା ସଂବଂଧି ଶତ୍ରୁ ଅବା ମିତ୍ର
ଜନମେ ଜନମେ ବିବିଧ ବିଚିତ୍ର ।
ପୂରୁବ ଜନମ ସ୍ମରଣ ବା କାହିଁ
ନୂତନ ସର୍ଜନା କରୁଅଛୁ ଧାଇଁ ।
ବନ୍ଧୁ ପରିଜନ ବୋଲୁଛୁ ଯାହାକୁ
ସାହା ହେବେ କେବା ଉଦ୍ଧାର ହେବାକୁ ।
ଗୃହ ଅଂଗନରେ ଭାରିଯା ରହିବ
ବନ୍ଧୁ ପରିଜନ ଶ୍ମଶାନେ ବାନ୍ଧବ ।
ଚିତାନଳେ ହେବ ଶରୀର ଦହନ
କର୍ମଫଳ ଘେନି ଯିବ ତହୁଁ ମନ ।
ସକଳ ସଂପଦ ତେଜି ଯିବୁ ଏକା
ଗୋବିନ୍ଦଙ୍କୁ ଧର ନ ରହିବ ଦକା ।



# ଆଲୋକିତ ପଥ

ଜଗତରେ ନାନା ଦୁଃଖେ ପ୍ରାଣୀ ଦିବାନିଶି
ସୁଖର ସଂଧାନେ ଧାଏଁ ସତତ ପ୍ରୟାସୀ ।
ଯାହା ସୁଖ ନେତ୍ର ପଥେ ଅଗ୍ରତେ ରାଜଇ
ସୁଖ ନୁହେଁ ସୁଖାଭାଷ ଗୁରୁ ବାକ୍ୟେ କହି ।
ସୁଖ ପରେ ଦୁଃଖ କ୍ରମେ ଭ୍ରମେ ଚକ୍ରାକାରେ
ମରୁଭୂମି ମରୀଚିକା ଭ୍ରମ ଜାତ କରେ ।
ସନ୍ନ୍ୟାସୀ ଗୃହସ୍ଥ ରଙ୍କ ହେଉ ବା ରାଜନ
ଦୁଃଖ ଶୋକୁ ପରିତ୍ରାଣେ ନୁହଁନ୍ତି ଭାଜନ ।
କର୍ମଫଳ ଭାଗୀ ସର୍ବେ ଭୋଗନ୍ତି ଯାତନା
ଅଶେଷ ଜନ୍ମର ଫଳ ଶୁଭାଶୁଭ ନାନା ।
ସକଳ ପ୍ରାଣୀ ଦେହରେ ଅଦୃଶ୍ୟେ ବିରାଜି
ଧର୍ମଭାଷା ଦେଶ ଭିନ୍ନ କହି ମୁଲ୍ଲା କାଜି ।
ଅନାଦି ଅନନ୍ତ ବିଶ୍ୱବାସ ନିରାକାର
ଦୃଶ୍ୟ ଅଦୃଶ୍ୟ ବିରାଜି ସେ ଜଗଦାଧାର ।
ସକଳ ଜଗତ ପ୍ରାଣ କୃପାମୟ ହରି
ତାଙ୍କ ନାବ ଆଶ୍ରା କଲେ ଭବସିନ୍ଧୁ ପାରି ।
ସତ୍ୟ ସ୍ୱରୂପ ପ୍ରକାଶି ଚିଦାନନ୍ଦ ମୟ
ଦୃଢ଼େ ଧର ତାଙ୍କ ପଦ ନାଶ ଶୋକ ଭୟ ।
ଜ୍ଞାନ ସ୍ୱରୂପେ ବିରାଜି ଜ୍ଞାନ ପାରାବାର
ସେ ଜ୍ଞାନ ନାଶିବ ଜୀବ ଅଜ୍ଞାନ ଅନ୍ଧାର ।
ଜୀବନ ସରଣୀ ତହିଁ ହେବ ଆଲୋକିତ
ଅନନ୍ତ ଘଟ ଭ୍ରମଣ ଏ ଜୀବନେ ଅନ୍ତ ।



# ଅଭେଦ ବ୍ରହ୍ମ

ଅଜ୍ଞାନ ଭ୍ରମ ଗ ପଡ଼ି ଆଚ୍ଛାଦିଛି
ନଶ୍ୱର ଭଙ୍ଗୁର ସତ୍ୟ ବିଚାରୁଛି ।
ଆପଣା ମଣୁଛି ଦୃଶ୍ୟ କଳେବର
ବିନାଶ କେବେହେଲେ ନୁହଁଇ ଗୋଚର ।
ଆପଣା ପରର ଭେଦ କରିବ ସେ
ପରେ ଅନାଦର ଆପଣାରେ ରସେ ।
ଭେଦ ବୁଦ୍ଧି ସିନା ଅଜ୍ଞାନ କାରଣ
ସର୍ବ ଦେହେ ଛନ୍ତି ବ୍ରହ୍ମ ନାରାୟଣ ।
ଜ୍ଞାନାଲୋକେ ହୃଦୁ ହେବ ତମ ନାଶ
ଏକ ବ୍ରହ୍ମ ସ୍ୱୟଂ ରାଜେ ବିଶ୍ୱବାସ ।
ନାମ ରୂପ ଭେଦ ମନରେ କଳ୍ପନା
ମାୟା ମରୀଚିକା ଫଳ ଏହା ସିନା ।
ଜାଗ୍ରତ ସ୍ୱପନେ ସୁଷୁପ୍ତିରେ ଯିଏ
ସର୍ବ ଦ୍ରଷ୍ଟା ସାକ୍ଷୀ ଆତ୍ମା ସେ ବୋଲାଏ ।
ଅନ୍ତରେ ବାହାରେ ରହିଅଛି ପୂରି
ଚିଦାନନ୍ଦ ଘନ ସର୍ବମୟ ହରି ।
ଜ୍ଞାନନେତ୍ରେ ତାଙ୍କୁ ହୃଦେ କର ବୋଧ
ବିଷମ ସଂସାର ତୁଟି ମୋହ ଭେଦ ।



# ଆରୋହଣ

ଆତ୍ମଭାବେ ଦେଖେ ଅପର ଜନକୁ
ମଧୁର ବଚନେ ତୋଷଇ ଆନକୁ ।
ସମ୍ମାନ ପ୍ରାପତି ଅନ୍ତରେ ନଥାଇ
ଅଭିମାନୁ ଦୂରେ ସଦା ରହିଥାଇ ।
ସକଳ ବନ୍ଧନୁ ମୁକତ ସେ ନର
ତା ପାଶେ ନଥାଏ ନିଜର ଅପର ।
ଜୀବନେ ମରଣେ ସୁଖ ଦୁଃଖେ ସମ
ପ୍ରିୟ ଅପ୍ରିୟରେ ନୁହଁଇ ବିଷମ ।
ସମଭାବେ ଯେହୁ ଦେଖଇ ସକଳ
ମୁକତ ସେ ନର ସଦା ସୁନିର୍ମଳ ।
ଅପର ଦରବେ ଲୋଭ ନକରଇ
ଅନାଦର କାହାଠାରେ ଯା'ର ନାହିଁ ।
ସଦା ଦ୍ୱନ୍ଦ୍ୱହୀନ ସେହି ମହାଜନ
ଆସକ୍ତି ମୁକତ ଲଭେ ଦିବ୍ୟ ସ୍ଥାନ ।
ମଇତ୍ର ବଇରୀ ମଣେ ଯେହୁ ସମ
କାମନା ବର୍ଜିତ ଜୀବନ ମହାନ ॥



# ଶରଣ ବତ୍ସଳ

ଶରଣ ଆଗତ ତାରଣ ଦେବୀ ବିଶ୍ୱରୂପିଣୀ
ପ୍ରସନ୍ନ ସଦୟେ ହୁଅ ମା' ଆଦି ଖିଳ ଜନନୀ ।
ବିଶ୍ୱେଶ୍ୱରୀ ମାତ ଅଭୟା ବିଶ୍ୱ ରକ୍ଷା କାରିଣୀ
ବିଶ୍ୱ ଚରାଚରଃଧିଶ୍ୱରୀ ଦେବୀ ବିଶ୍ୱ ପାଳିନୀ ।
ଅନନ୍ତ ଶକତି ଧାରିଣୀ ତୁମେ ବୈଷ୍ଣବୀ ଶକ୍ତି
ଜଗତ ସୃଜନ ସ୍ୱରୂପା ବୀଜ ଚରଣେ ନତି ।
ଜଗତ ମୋହନ କାରିଣୀ ବିଶ୍ୱମ୍ଭରା ଜନନୀ
ପ୍ରସନ୍ନ ଭକତେ ପ୍ରଦାନ ଦେବୀ ମୋକ୍ଷ ଦାୟିନୀ ।
ସକଳ ସ୍ୱରୂପ ତୁମ୍ଭର ବିଦ୍ୟା ନାମ ଧରଇ
ସରବ ଅଙ୍ଗନା ସଂସାରେ ତୁମ୍ଭେ ଆନ ନୁହଁଇ ।
ଚରାଚର ବିଶ୍ୱ ବ୍ୟାପିଛି ତୁମ୍ଭ ବିଚିତ୍ର ମାୟା
ଦୃଶ୍ୟ ଜଗତରେ ସକଳେ ଯେହ୍ନେ କାୟାରେ ଛାୟା ।
ସ୍ତବ ସ୍ତୁତି କେଉଁ ବିଧାନେ କେବା ପାରିବ କରି
ଅଧମ ସନ୍ତାନ ଭକତି ଚିତ୍ତେ ଦିଅ ମା' ଭରି ।
ଅନ୍ତର ବାହାରେ ପୂରିଛ କଣ୍ଠେ ଭାଷା ରୂପିଣୀ
ଆକୁଳେ କାତରେ ଡାକଇ ଘେନା କର ଦୟିନୀ ॥



# ଚକ୍ରମୁକ୍ତି

ରୂପ ରସ ଗନ୍ଧ ଶବଦ ପରଶେ ମନ ଯେବେ ରସିଥାଏ
ଭୋଗ ଲାଳସାରେ ପ୍ରାପତି କାରଣେ ନାନା ଉପାୟ ଭିଆଏ ।
ଇନ୍ଦ୍ରି ଭୋଗ ଯାହା ଅନିତ୍ୟ ଅସତ୍ୟ କ୍ଷଣିକେ ହୁଏ ବିନାଶ
ତହୁଁ ଜାତ ସୁଖ ଘନରେ ଚପଳା ପରାୟ ହୁଅଇ ଶେଷ ।
ଆନ ଇନ୍ଦ୍ରି ସୁଖ ପ୍ରାପତି କାରଣେ ମାନସ କରେ ବ୍ୟାକୁଳ
ପ୍ରାପତି ଆନନ୍ଦ ନୋହିଲେ ବିଶାଦ ସର୍ବଦା ଚିତ୍ତ ଉଦ୍‌ବେଳ ।
ଶରୀରକୁ 'ମୁଁ' ନିଶ୍ଚୟ କରନ୍ତେ କର୍ତ୍ତା ଭୋକ୍ତା ହୋଇଥାଏ
ଶରୀର ସଂଭବ ବିକାଶ ବିନାଶ ତେଣୁ ନଶ୍ୱର ବୋଲାଏ ।
ଅଜନ୍ମା ଅସଂଗ ଶୁଦ୍ଧ ବୁଦ୍ଧ ମୁକ୍ତ ମୁଁ ଆତ୍ମା ଉପାଧି ହୀନ
ଶରୀର ନୁହଁଇ ଅବିନାଶୀ ବ୍ରହ୍ମ ବୋଧରେ ଲଭିବୁ ଜ୍ଞାନ ।
ଜ୍ଞାନାଗ୍ନି ସକଳ କର୍ମଫଳ ନାଶି ନିର୍ବୀଜ ଭାବ ଧାରଣ
ସଂଚିତ ପ୍ରାରବ୍ଧ କର୍ମଫଳମାନ ତହିଁ ହୋଇବ ଦହନ ।
ବୀଜର ଦଗ୍ଧରେ ଅଙ୍କୁର କାହୁଁ ବା ତହୁଁ ହେବ ଉପଜାତ
ଆବର୍ତ୍ତ ଚକ୍ରରୁ ମୁକତି ଲଭନ୍ତେ ଜନ୍ମ ମରଣ ରହିତ ॥



# ସତ୍ୟ ଶ୍ରେଷ୍ଠ

କୋଇଲିଲୋ ! ତ୍ରିକାଳରେ ସତ୍ୟ ନାରାୟଣ
ପଞ୍ଚକାଳ ସତ୍ୟ ଯେଣୁ ସେ ସତ୍ୟ ପ୍ରମାଣ, ଲୋ କୋଇଲି ।
କୋଇଲି ଲୋ ! ସତ୍ୟେ ଖମ୍ଭୁ ନୃସିଂହ ବାହାର
ସତ୍ୟ ସନାତନ ଦେବ ସର୍ବମୟ ପୁର, ଲୋ କୋଇଲି ।
କୋଇଲି ଲୋ ! ସାବତ୍ରୀ ଯେ ସତୀ ଶିରୋମଣି
ଶମନ ସତ୍ୟବାକ୍ୟରେ ସତ୍ୟବାନ ଜିଣି, ଲୋ କୋଇଲି ।
କୋଇଲି ଲୋ ! ସତ୍ୟ ସନ୍ଧ ରାଜା ହରିଶ୍ଚନ୍ଦ୍ର
ଶ୍ମଶାନ ଘାଟ ପ୍ରହରୀ ନୃପକୁଳ ଇନ୍ଦ୍ର, ଲୋ କୋଇଲି ।
କୋଇଲି ଲୋ ! ସତ୍ୟପାଳି ରାମଚନ୍ଦ୍ର ବୀର
ସୀତୟା ଲକ୍ଷ୍ମଣ ସହ ବନରେ ବିହାର, ଲୋ କୋଇଲି ।
କୋଇଲି ଲୋ ! ସତ୍ୟେ ଶିଳା ଭାସଇ ସାଗରେ
ସେତୁ ବାନ୍ଧି ରାମଚନ୍ଦ୍ର ପ୍ରବେଶ ଲଙ୍କାରେ, ଲୋ କୋଇଲି ।
କୋଇଲି ଲୋ ! ସତୀ ସତ୍ୟ ପରୀକ୍ଷା କାରଣ
ଅନଳେ ପ୍ରବେଶି ସୀତା ମହତି ପ୍ରମାଣ, ଲୋ କୋଇଲି ।

କୋଇଲି ଲୋ ! ବାଲମିକ ଆଶ୍ରମରୁ ସତୀ
ସତ୍ୟ ପରଖ କାରଣେ ଗର୍ଭେ ବସୁମତୀ, ଲୋ କୋଇଲି ।
କୋଇଲି ଲୋ ! ସତ୍ୟଦାନେ ବଳୀଦାନବୀର
ତୃତୀୟପାଦ ମସ୍ତକେ ପାତାଳେ ନିକର, ଲୋ କୋଇଲି ।
କୋଇଲି ଲୋ ! ସତ୍ୟ ବାଚା ମନୁଷ୍ୟରେ ସାର
ସତ୍ୟବାଦୀକୁ ସହାୟ ଜଗତ-ଆଧାର, ଲୋ କୋଇଲି ।

ଶମନ=ଯମ,
ପଞ୍ଚକାଳ=ବିକର୍ତ୍ତ ପଞ୍ଚକାଳଙ୍କ ନମସ୍ତେ ଜ୍ଞାନ
ସାଗର-୩୨ ମହାଭାରତ-ଶାନ୍ତିପର୍ବ-ମୋକ୍ଷପର୍ବ-ପୃ-୪୮୬୭
ଜଗତ-ଆଧାର=ପରମବ୍ରହ୍ମ



# ଘଟାନ୍ତର ଯାତ୍ରା

କମଳ ନୟନ ଅନନ୍ତ ଶୟନ କ୍ଷୀରୋଦ ସାଗର ବାସୀ
ଖଣ୍ଡନ କର ମୋ ପ୍ରାରବ୍ଧ ସଞ୍ଚିତ ସକଳ ଦୂରିତ ରାଶି ।
ଗହନ ପରାୟ ସଂସାର ଜଟିଳ ପଥ ନହୁଅଇ ବାରି
ଘେନାକର ପ୍ରଭୁ ଅଧମ ଜନର ଅନ୍ତର ତଳ ଗୁହାରି ।
ନୂତନ ସର୍ଜନା ମାନସ କଳ୍ପନା ଶେଷେ ଦିଗହରା ପ୍ରାଣୀ
ଚିହ୍ନିକି ପାରିବେ ଗତ ଜନ୍ମେ ଯାହା କହିଲେ ଯେତେ ବଖାଣି ।
ଛଦ୍ମ ବୁଦ୍ଧିରେ ସଂକୋଚ ଭାବନା ପରାର୍ଥେ ଦୃଷ୍ଟି ନଯାଏ
ଜଗତ କାରଣ ସର୍ବ ଅନ୍ତର୍ଯ୍ୟାମୀ ତାଙ୍କ ପଦେ ମଥା ନୁଏଁ ।
ଝରୁଛି ଝରଣା ସେ ଦିବ୍ୟ କନ୍ଦରୁ ଜନପ୍ରାଣୀ ହିତକାରୀ
ନଶ୍ୱର ଭଙ୍ଗୁର ପଥେ ବଣା ଯେହ୍ନେ ପୋତ ବିହୀନ କାଣ୍ଡାରୀ ।
ଟଙ୍କଧରଙ୍କର ଶରଣ ପଶ ତୁ ମାନସ ଭୟ ନାଶନ
ଠୁଳ ଶୂନ୍ୟବ୍ରହ୍ମ ଅନାଦି କାରଣ ଚିତ୍ତେ ସଦାକାଳେ ଘେନ ।
ଡମ୍ବରୁ ନିନାଦ ଶୁଭିବ ହୃଦରେ ଜାଣିବୁ ଶୁଦ୍ଧ ମାନସ
ଢମପଣ କରି ସଂସାର ସାଗରେ ବୁଡ଼ି ହୋଇଯିବୁ ନାଶ ।
ଅମର ହୋଇକେ ସଂସାରେ ରହିଛି ରହିବ ବା କିଏ କାହିଁ
ତମୋ ରାଶି ହୃଦକନ୍ଦରେ ପୂରିତ ସତ୍ତ୍ୱ ଅର୍ଥେ ସ୍ଥାନ ନାହିଁ ।

ଥବିର କାଳକୁ ଚାହିଁ ବସିଅଛୁ କରିବାକୁ ଧର୍ମ କର୍ମ
ଦୁରୀତ ଦୁସ୍ତର ଦୁର୍ଭାର ଜୀବନ ବାର୍ଦ୍ଧକ୍ୟେ ଲୋଡ଼ୁ ମରମ ।
ଧର୍ମ ନାବପରେ ଜୀବନ ତରଣୀ ବାତାନୁକୂଳ ଆଚାର
ନବୀନ ରୂପ ସଂଭାରରେ ମାନସେ ନବଭାବର ସଂଭାର ।
ପରାଣ ସଂକଟ ଘଟାନ୍ତର କାଳେ ଜ୍ଞାନ ବୁଦ୍ଧି ଯିବ ହଜି
ଫୁଟନ୍ତା ଫୁଲର ବାସ ଚହଟଇ ମଉଳେ ସୁବାସ ମୁଦି ।
ବସନ୍ତ ଯୌବନେ ସାଧନା ରତ ଯେ ବ୍ରତଧାରୀ ଦିନେଦିନେ
ଭବସିନ୍ଧୁ ପାର ହୋଇବା କାରଣେ ସଂଧାନରେ ଅନୁକ୍ଷଣେ ।
ମରଣ ଯାହାକୁ କହନ୍ତି ଜଗତେ ପଞ୍ଚଭୂତର ଶରୀର
ମରତ ଭୁବନ ଲୀଳା ସାଂଗ କରି ଆତ୍ମା ଭ୍ରମେ ଘଟାନ୍ତର ।

ପରାର୍ଥ=ସମାଜ କଲ୍ୟାଣ, କାଣ୍ଡାରୀ=ନାବିକ
ଟଙ୍କଧର=ସଦାଶିବ



# ବସନ୍ତର ନବୀନ ପରଶେ

ମଳୟର ମୃଦୁ ପଦ ପାତେ ପଲ୍ଲବିତ ପାଦପ ଲତିକା
ଦୋଳାୟିତ ନବବଲ୍ଲୀ ଗାଏ ସୁମଧୁର ପ୍ରଣୟ ଗୀତିକା ।
ତା' କୋଳରୁ ହସିଉଠେ ବିଧି ନିଧି ରଙ୍ଗେ କଳିକା ନବୀନା
ବସନ୍ତର ନବୀନ ପରଶେ ଧରା ଆଜି ଉଦ୍‌ଭିନ୍ନ ଯୌବନା ।

ତୁଳିଧରି ରଂଗବୋଳି ସପ୍ତରଙ୍ଗେ ଇନ୍ଦ୍ରଧନୁ ଶୋଭା
ପବମାନ ହିଲ୍ଲୋଳରେ ବୀଚିମାଳା ଅନନ୍ତ ଗରଭା ।
ନାଚିନାଚି ଫେନଚୂଡ଼େ ନତଶିରେ ହେଉଅଛି ଚୂନା
ବସନ୍ତର ନବୀନ ପରଶେ ଧରାଆଜି ଉଦ୍‌ଭିନ୍ନ ଯୌବନା ।

ସରୋବରେ ରଂଗଶ୍ୱେତ କମଳକୁମୁଦ ଦିବସରଜନୀ
ଦିବସରେ ନଳିନ ହରଷେ କୁମୁଦର ପ୍ରିୟ ନିଶିଥିନୀ ।
ପଲ୍ଲବରେ ବିମଣ୍ଡିତ ଅପରୂପା ଶ୍ୟାମା ଧରଣୀ ମଣ୍ଡନା
ବସନ୍ତର ନବୀନ ପରଶେ ଧରା ଆଜି ଉଦ୍‌ଭିନ୍ନ ଯୌବନା ।

ପଳାସ ଶାଲ୍ମଳୀ ବନେ ଲାଗିଅଛି ହୁତାଶର ସ୍ୱର୍ଣ୍ଣ ଶିଖା
ମାଧବୀ ନିକୁଞ୍ଜେ ରନ୍ଧ୍ରେ ନାଚୁଅଛି ବାତେ ମନୁତେଜି ଦକା ।
ନିଶିରେ ରଜନୀଗନ୍ଧା ମଲ୍ଲିକା ମରୁଆ ସୁବାସ ସୁମନା
ବସନ୍ତର ନବୀନ ପରଶେ ଧରା ଆଜି ଉଦ୍‌ଭିନ୍ନ ଯୌବନା ।

ମଧୁଛନ୍ଦେ କୋଳେ ଧରି ରସଭାରେ ସମ୍ଭାର କାନନ ହସନ୍ତ
ଦିବ୍ୟଧାମୁ ଅବତରି ନାନାରଙ୍ଗେ ମଣ୍ଡିତ ରାଜନ ବସନ୍ତ ।
ମଧୁରସେ ଭରାଘଟ ଭରି ଲଙ୍କା ଆମ୍ର କହେ ପାନ୍ଥ ଅନା
ବସନ୍ତର ନବୀନ ପରଶେ ଧରା ଆଜି ଉଦ୍‌ଭିନ୍ନ ଯୌବନା ।

ଗିରିକୂଟେ ବନାନଳ ହାରସମ ଦୂର ଚକ୍ରବାଳେ ଦିଶେ
ତଟିନୀର କ୍ଷୀଣଧାର ଅପ୍ରକଟେ ଶୁଭ୍ର ସିକତାରେ ମିଶେ ।
ବନଚରେ ନିଶିଥରେ ଜଳ ଆଶେ କଣ୍ଠାଗ୍ରତ କଠିନ ସାଧନା
ବସନ୍ତର ନବୀନ ପରଶେ ଧରା ଆଜି ଉଦ୍‌ଭିନ୍ନ ଯୌବନା ।

ଶ୍ରୀରାମ ଆସିବେ ମର୍ତ୍ତ୍ୟେ ପୀଠେପୀଠେ ରମ୍ୟ ତୋରଣ ରାଜିତ
ମୃଣ୍ମୟୀ ପ୍ରତିମା କାହିଁ ନାନା ବର୍ଣ୍ଣେ ଦିବ୍ୟ କୁସୁମେ ମଣ୍ଡିତ ।
ଓଁକାର ରାଗିଣୀ କଣ୍ଠେ ଦେବପୀଠେ ମନ୍ତ୍ରପୂତ ଆରାଧନା
ବସନ୍ତର ନବୀନ ପରଶେ ଧରା ଆଜି ଉଦ୍‌ଭିନ୍ନ ଯୌବନା ।

ବାସନ୍ତୀକ ଦେବୀପୀଠେ ଶୋଭମାନା ସିଦ୍ଧ କାତ୍ୟାୟନୀ
ଜଗତ ଭଗତ ଅଘ ବିନାଶ କାରଣେ କଲ୍ୟାଣ ଦାୟିନୀ ।
ସଂସାର ଦାବ ଦହନେ ସନ୍ତୁଳିତ ମୁହିଁ ମ୍ଳାନ ଦୀନସିନା
ବସନ୍ତର ନବୀନ ପରଶେ ଧରା ଆଜି ଉଦ୍‌ଭିନ୍ନ ଯୌବନା ।

ବନେ ଜଳେ ଦାବାନଳ ବନଚର ସନ୍ତାପରେ ଆର୍ଦ୍ର
ସଂସାରେ ଦାନବ ଖଳ ଦିଏ ମର୍ମଦାହି ନବନବ ଖେଦ ।
ଅନଳ ଅନ୍ତରେ ଜଳେ ଦହନରେ ସ୍ୱଭାବରେ ଆନମନା
ବସନ୍ତର ନବୀନ ପରଶେ ଧରା ଆଜି ଉଦ୍‌ଭିନ୍ନ ଯୌବନା ।

ଅନ୍ତରେ ବାହାରେ ଯେଣେ ଦୃଷ୍ଟିଯାଏ ତୁମରି ଦିବ୍ୟ ପ୍ରକାଶ
ସକଳ ଘଟରେ ତୁମେ ତୁମ କରଣୀରେ ସକଳ ନିଃଶ୍ୱାସ ।
ସନ୍ତାପିତ ସଂସାର ତାପ ସ୍ନିଗ୍ଧ ନେତ୍ରେ କରିଦିଅ ସୁନା
ବସନ୍ତର ନବୀନ ପରଶେ ଧରା ଆଜି ଉଦ୍‌ଭିନ୍ନ ଯୌବନା ।





ଅଧ୍ୟାପନା ସରିଚି, କିନ୍ତୁ ବୃତ୍ତିରେ ଥାଇ ସେ କ'ଣ ଖାଲି ଅଧ୍ୟାପନାରେ ଥିଲେ ! ଥିଲେ ତ ଆଧ୍ୟାତ୍ମିକତାରେ, ଶାସ୍ତ୍ରପୁରାଣରେ, ସେ ସବୁ ଚର୍ଚ୍ଚାରେ, ବିଚାରରେ ଓ ତା' ସହିତ ଲେଖାଲେଖିରେ । ସେ ଲେଖାଲେଖି ପ୍ରସଙ୍ଗଟି ସେଇ ଭକ୍ତି, ଈଶ୍ୱର ପରାୟଣତା, ଧାର୍ମିକତା ଓ ଆଧ୍ୟାତ୍ମ । ସେ ଆଲୋଚନା ହେଉ କି କବିତା ହେଉ । ପ୍ରାଧ୍ୟାପକ ସୁଶାନ୍ତ କୁମାର ପଣ୍ଡାଙ୍କ ମନ, ପ୍ରାଣ, ବିଚାର, ଲେଖାଲେଖି ଓ ବ୍ୟକ୍ତବ୍ୟର ସେଇ ସ୍ୱଧର୍ମଜାତ ଗୋଟିଏ ଧାରା 'ସମର୍ପଣ ସୁମନ ଶତକ' । ସେଇ ନାଆଁ ହିଁ କହେ ବିଭୁଙ୍କ ପଦାରବିନ୍ଦରେ ଉତ୍ସର୍ଗୀକୃତ ହେଇ ଭକ୍ତିଫୁଲ ଅର୍ପଣ କରିବା ସହିତ ଭାବାକୁଳତାର ଏ ସବୁ ଉଚ୍ଚାରିତ ସଂଗୀତର କଥା । ସେଇ ଫୁଲଗୁଡ଼ିକୁ ଆପଣ କବିତା, ଗୀତ, ଜଣାଣ, ଭଜନ, ସ୍ତବ କି ଶ୍ଳୋକ ଯା କୁହନ୍ତୁ । ନିଃସନ୍ଦେହରେ କହିହବ ତାହା ହିଁ ସୁଶାନ୍ତ କୁମାର ପଣ୍ଡାଙ୍କର ଆତ୍ମିକ ପରିଚୟ ଓ ପାଠକମାନଙ୍କ ଲାଗି କବିତାଂଜଳି ।।




ପ୍ରକାଶକ- କୃଷ୍ଣା
ମୋ. ୯୨୩୮୫୧୯୮୧୫